

ଡକ୍ଟର ମାୟାଧର ମାନସିଂହ

# ସୂଚୀ

## —ଶିକ୍ଷକତା, ବଙ୍ଗ ପ୍ରବାସ ଓ ଦ୍ୱିତୀୟ ବେକାର କାଳ—

## —ଗଡ଼ଜାତ ଜୀବନ ଓ ହୃଦୟର କ୍ଷତ—



## —ସାମୟିକ—

## ବୋଇତ-ବନ୍ଦାଣ

ପ୍ରଭାତେ କନକ-ରଶ୍ମି ତରୁଣ ରବିର
ବୃକ୍ଷଶିରେ ଗ୍ରାମ-ସ୍ଥଳେ ଜ୍ୟୋତିର ଅମ୍ବର
ବାନ୍ଧି ଦେଲା କ୍ଷଣକରେ । ମୁଗ୍‌ଧ ଗ୍ରାମବାସୀ
ଉଭା ହେଲେ ନଦୀଘାଟରେ ଦଳେ ଦଳେ ଆସି
ବୋଇତ ଦେଖିବା ପାଇଁ । ଦୁଇ ବର୍ଷ ପରେ
ସାଧବର ପୁଅ ତିନି ଫେରିଛନ୍ତି ଘରେ,
କିବା ଆଣିଛନ୍ତି ଦୂରୁ, ସାଗର ସେ ପାରୁ
ଶୁଣାଯାଏ ରାଜପୁତ୍ର ଆସିଛି ସେ ଆଡ଼ୁ
ଏ ଦେଶ ଦେଖିବା ଲାଗି । ନାନା କଥା ଶୁଣି,
ନାନା କଥା ସୃଷ୍ଟିଶୀଳ କଳ୍ପନାରୁ ବୁଣି
ଆସୁଛନ୍ତି ପଲ୍ଲୀଜନେ ମାଡ଼ି ନଦୀଘାଟରେ
ବୋଇତ ଦେଖିବା ଲାଗି । ହେଲେ ଉଭା ଧୀରେ

କେହୁ ଖରେ, କେହୁ ମାରେ, କେହୁ ଟିକେ ଦୂରେ
ଘନଚ୍ଛାୟା ବୃକ୍ଷତଳେ । ଗ୍ରାମ ପ୍ରୌଢ଼ ଦଳେ
ଖିର ଘୁଣ୍ଡ଼ ବୋଇତରେ ଗଲେ ଫଣି ବଳେ
ଡାକ ଡାକ ଉଚ୍ଚସ୍ୱରେ ସାଧବପୁଅରେ
ଗୁରୁଜନ ଭାବ ଧରି; ଝୋକାଏ ପଶ୍ଚାତେ
କୌତୁହଳେ ପଛ ଧରି ପଶୁଁ, ତାଙ୍କୁ ହାତେ
ନବାରିଲେ ନଦୀକୂଳେ, କ୍ରୋଧ ହେଲେ କଚ୍ଛି;
କହିଲେ, "ଏଗୁଡ଼ା ଖାଲି କୁଳାଙ୍ଗାର ଛି ଛି !
କଥା କି ମାନନ୍ତି ଆଉ ? ଶିଖିଲେ ଆଚାର ?
ଆମ ପିଲାଦିନେ ସ୍ୱପ୍ନ ଥିଲା ଏ ବେଭାର !"

କହଗତ ଗ୍ରାମପଥେ ବୃକ୍ଷ ଅନ୍ତରାଳୁ
ଶୁଭିଲା ଏକାଳେ ହୁଳହୁଳି ଧ୍ୱନି ବାଳୁ
ଗ୍ରାମସୀମନ୍ତିନୀ କଣ୍ଠୁ । କ୍ରମେ ସେହି ପଥେ
ବାହାରିଲେ ସୁନ୍ଦରୀଏ ଧରି ଏକ ହସ୍ତେ
ସୁରଭିତ ମାଲ୍ୟଜଳ, ଅନ୍ୟ ହସ୍ତେ ଧରି
ନବ ସୂର୍ପ, ଶୁଭ୍ର ବନ୍ଦାପନା ଦ୍ରବ୍ୟେ ଭରି ।
ମୁଖ ତାଙ୍କ ନତ ଲାଜେ, ଲୋକ-ସମାଗମେ
ପଦ୍ମ ସେ କି ପ୍ରଦୋଷରେ ତାରକା-ଆଗମେ !
ଅବଶ ଚରଣ ତାଙ୍କ, ବାଲୁକାରେ ମିଶେ
ଅଲକ୍ତରଞ୍ଜିତ ନଖପନ୍ତି ନାହିଁ ଦିଶେ—
ତାରା ସେ ଲୁଚନ୍ତି କିବା ବୃଷ୍ଟି-ଘନତଳେ
କୁସୁମ ସେ ଲୁପ୍ତ କିବା ପଲ୍ଲବଗହଳେ !
ନତମୁଖୀ ସେ ବାମାଏ କହୁ ପରସ୍ପରେ
ସ୍ୱଭାବଜ ଗୁଣେ ରତ ଗଳ୍ପେ କ୍ଷୀଣ ସ୍ୱରେ

କେଜାଣି କ କଥା ଧରି । ନାପିତୁଣୀ ଡାକ,
କନ୍ୟାଙ୍କ ପଛରୁ ଉଠେ, "ବେଳ ଅଛି ନାକ
ବୁଲୁଛ ଗପୁଛ ମତେ ? ଆସନା ତୁରିତେ
ସାଧବ ସାଆନ୍ତେ ମୋର ସଜିବେଣି ତଟେ;
ବନ୍ଦାପନା ସରିଲେ ତ ଆସିବେ ସେ ଘରେ ?
ସ୍ନାନ-ଶୁଦ୍ଧି ହେବ ପୁଣି—ଆସନା ଚଞ୍ଚଳେ…"
'ହୁଳ', 'ହୁଳ' କହି ସବୁ ସୀମାନ୍ତିନୀକୁଳ
ଚଞ୍ଚଳ କରିଲେ ଗତି । ବାଲୁକା-ବ୍ୟାକୁଳ
ସେ ପଥେ ଭୂଷଣ-ଗୁଚ୍ଛ ପଦ ବାମାଙ୍କର
ଗତି କରୁଏ ବଳେ ମନ୍ଦ । ଶ୍ରମାଇ ପସ୍ୱର,
ଉପୁଜାଇ ସ୍ୱେଦ-ମୁକ୍ତା ଶ୍ରମେ ଗଣ୍ଡ-ସ୍ଥଳେ
କ୍ରମେ ବାମା ଉପସ୍ଥିତ ପୋତ ସମୀପରେ ।
ବନ୍ଧୁବନ୍ଧୁସିନୀ କେତୁ କନ୍ୟାଙ୍କ ଆଗେଇ
'କର ଲୋ ବନ୍ଦନା ବେଗେ ।' ଜନତାରେ ଘୂର୍ଣ୍ଣି
ନବସୀମନ୍ତିନୀଗଣ ଗୁରୁ ସରମରେ
ଟେକି ନ ପାରିଲେ ହସ୍ତ—ଜାଣି, ନାପିତରେ
ସଂକେତନ୍ତ ବୃଦ୍ଧା ଏକ—ସେ ତହୁଁ ଚିତ୍କାର
ଦୂରସ୍ଥ କରିଲା ଲୁବ୍ଧ ଜନତାରେ ଠାରି ।
ତହୁଁ ଏକ ନାରୀ କହେ, 'କର ଲୋ ବନ୍ଦନା'…
ଆନ ଆର ପାଖ-ଜଣେ କହୁଛି 'ଦେଖନା
ଠିଆ କିମ୍ପା ? କର ବେଗେ ।'—ଠିକ୍ ସେଇପରି
ଏକ ଆରେ ତିଆରିଲେ । ତହୁଁ କ୍ରୋଧ କରି
ଝଟଣାଇ ସ୍ୱାମିନୀ ଉଠି କରିଲେ ଚିତ୍କାର,
"ଆସୁ ଏ ଟୋକୀଏ ସତେ ! ବଲୁ ଲୋ କାହାର

ହେଲ କସ୍ପା ଲାଜ ଯଦ ଏବେ ମାଡ଼ୁଥାଇ ?
ବନ୍ଦାଅ ଲୋ"—ବୋଲୁଁ ସବେ ଲାଗିଲେ ବନ୍ଦାଇ ।

ପ୍ରାରମ୍ଭ ଗାନ

ପ୍ରଥମା

ସାଧବ ଘର ବୋଇତ

ଦୂରୁ ଦେଖୁଁ ଆଣେ ଲକ୍ଷ୍ମୀ କନ୍ଥ ତ ଗୋ,
ମଣିରତନ ନୁହେ କନ୍ଥ ତ, ସଜନ ଗୋ !

ଦ୍ୱିତୀୟା

ବୋଇତ ଏ ସାଧବର,

ଦେଖି ଆସେ କେତେ ଦେଶ ନଗର ଗୋ,
ଭାସି ଆସଇ କାଟି ସାଗର ସଜନ ଗୋ !

ତୃତୀୟା

କେତେ ପୋତ ଜଳେ ଭାସେ

ସାଧବ ପୋତ ସରିକି ନ ଆସେ ଗୋ,
ରାଜହଂସ ସମ ପରକାଶେ ସଜନୀ ଗୋ !

ପ୍ରଥମା

ଆସ ଗୋ ବନ୍ଦାଇ ନବା

ବୋଇତ-ରାଣୀ କି ଦେଇ ପୂଜିବା ଗୋ ?
ତାଙ୍କ ପଦ-ଜଳ ଶିରେ ଦବା, ସଜନୀ ଗୋ !

ଦ୍ୱିତୀୟା

ଭଣପୁରେ ମୋର ଘର
ସିନ୍ଧୁକୂଳ ଦୂରେ ମୋର ନଗର ଗୋ
ମତେ ବଚାଅ ଏ ଉପଦ୍ରବ, ସଜନ ଗୋ !

ତୃତୀୟା

ମୋ ଘର ବାଣପୁରରେ
ପୋତ ତ ମାଳ ଚିଲିକା ଜଳରେ ଗୋ,
ମୋତେ ଆଗ କର ବନ୍ଦାଣରେ, ସଜନ ଗୋ !

ପ୍ରଥମା

ମୁଁ ତ ଚେଲଚାଲ ନାରୀ
ପୋତେ ଧଳା ଚନ୍ଦ୍ରିଁ ବାରଧି-ବାରି ଗୋ
ମୁଁ କି ବନ୍ଦାଣରେ ଯିବ ହାରି, ସଜନ ଗୋ !

ପ୍ରଥମା

ବନ୍ଦନା କର ହେ ଏବେ······

ସମସ୍ତେ

[ ଶଙ୍କରାଭରଣ ]

ଜୟ ଗୋ ବୋଇତ-ରାଣୀ ସଲିଳ ସୁନ୍ଦରୀ
ଆମ୍ଭ ଲାଗି ଆଣ ଧନ କାହୁଁ ଗର୍ଭେ ଭରି
ପୂର୍ଣ୍ଣ କର ଗନ୍ତାଘର
ତୁମ୍ଭ ଲାଗି ପୂରି ଉଠେ ଭବନ ଆମ୍ଭର ।

ହେମନ୍ତେ ବିଦାୟ ହେଇ, ଚଳେ ନଦୀଜଳେ
ତୋର ଫେରିବାକୁ ଚାହିଁଥାଇ ସନ୍ତତରେ
ଆଷାଢ଼ରେ ତୋ ଆସିବା
ଘରେ ଯେହ୍ନେ ଗୃହବଧୂ ପ୍ରବେଶ ସେ କିବା ।

ଯେଉଁମାନଙ୍କ ପ୍ରିୟ-ଜନେ ଦୂର ସେ ପ୍ରବାସେ
ଆମେ କୁଳବଧୂ ଚାହିଁଥାଉ ତୋର ଆଶେ,
ପୁଣି ଯେଉଁ ପ୍ରିୟଜନ
ତୋ ଫେରିବା ଆମ୍ଭ ଘରେ ଆନନ୍ଦ-କାରଣ ।

ସୁଖରେ ଫେରାଇଥିବୁ ପ୍ରିୟଙ୍କୁ ଆମ୍ଭର
କୁଳମେ ଗୋ ହେବୁ ଦେବ, କାରଣ ତାଙ୍କର
ଦୂର ଦେଶେ ପରବାସେ
ଚିତ୍ତ ତାଙ୍କ ନ ଯାଏ ଯେପରି ଆନ ଆଶେ ।

ତୁମ୍ଭେ ଲକ୍ଷ୍ମୀ, ତୁମ୍ଭେ ଦେବୀ, ତୁମ୍ଭେ ତ ସକଳ
ତୁମ୍ଭ ଯୋଗୁ ଏ ବେଶ-ଭୂଷଣ ଏ ଦେହର
ତୁମ୍ଭ ଯୋଗୁ ଗୃହସୁଖ
ତୁମ୍ଭ ଯୋଗୁ ପ୍ରିୟ ମୁଖେ ଫୁଟେ କାଞ୍ଚନ-ମୟୂଖ ।

ସଦା ତୁମ୍ଭ ସିନ୍ଧୁ-ଯାତ୍ରା ହେଉ ଜୟ-ଶୀଳ
ତୁମ୍ଭ ଖଡ୍‌ଗେ ଛିନ୍ନ ହେଉ ଦୁର ଶତ୍ରୁ-ଶିର
ସିନ୍ଧୁ ବକ୍ଷ ସଦା ତରି
ଦେଶରେ ବାଣିଜ୍ୟ ଆଣି ଘରେ ଘରେ ଶିରୀ ।

ଆମ୍ଭର ବନ୍ଦନା ଘେନ ଆଗୋ ସିନ୍ଧୁରାଣି !
କନକେ ପୂରାଅ ଘର ଦୂରଦେଶୁ ଆଣି
ଆମ୍ଭ ପ୍ରିୟେ ପାଳୁଥିବ,
ଜନନୀ ସମାନ ସଦା ଭାଳୁଥିବ ଶିବ ।

ବନ୍ଦାପନା ହେଲା ଶେଷ । ସର୍ବ ସୀମନ୍ତିନୀ
ବୋଇତେ ପଶିଲେ ଧୀରେ ବଜାଇ କଙ୍କଣୀ
ବକ୍ଷସ ଅଳିନ୍ଦେ ମନ୍ଦେ, ଭେଟିବାକୁ ଉର୍ମି
ସାଧବପୁଅରେ ପୁଣି, ଦାନା ଚଅଁଧୋଇ ।



# ବୀଣା-ଭିକ୍ଷା

ଗାଇବା ଇଚ୍ଛା ଯଦି ଦେଲ ହେ ପ୍ରଭୁ ମତେ
ବାଇବା ପାଇଁ ବୀଣା ଦିଅ ଏ ମୋର ହସ୍ତେ ।

ପାଗଳ ଘନ-ଗର୍ଜି-ଆକୁଳଧ୍ୱାନ-ଗୀତି
ପ୍ରାଣେ ମୋ ଉପୁଜାଏ ବିପୁଳ ଗାନ-ପ୍ରୀତି ।
ନ ଥାଏ ନ ଥାଏ ଗୋ କୁଟୀରେ ବୀଣା ମୋର
ପୂହାଇଦଏ ଗର୍ଜି ଶ୍ରାବଣ ଘନ-ଘୋର
ହତାଶ ପର ସଖା, ହତାଶ ପର ସତେ !
ଦେଇନା ମତେ ବୀଣା ଯେଣୁ ହେ ମୋର ହସ୍ତେ ।

ଜୋଛନା ମୋ ଅଗଣା ଶୋଭନା କରି ଆସେ
ମଲ୍ଲୀ ଫୁଟି ଉଠେ, ବକୁଳ ଲୁଟେ ବାସେ,
ଆକୁଳ ସହକାରେ ଦୁକୂଳ ପର ଘେରି
ଶୁକଳ ଜଉମୁଖା, ମଳୟେ ନାଚେ ଥରି;
କାମିନୀ ଗୁଚ୍ଛ ନାଚେ, ନାଚଇ ମାଧବିକା
ଲଗଇ ଶୋଭା-ପୁରେ ପ୍ରମୋଦ କଣାଗୀକା;
ସେ ପରସାଦ-ସ୍ୱାଦ, ଅନ୍ତେ ଦେଇ ଢାଳ
ଗାଇବା ଘୋର ଆଶା ପରାଣେ ଦେଇ ଜାଳ,
ବାଇବା ପାଇଁ ବୀଣା, ଦେଇନା କପାଁ କହ
ବ୍ୟର୍ଥ ଅଭିଳାଷ ପୋଡ଼ଇ ଅହରହ ।

———

# ଧରଣୀ-ବାସ

୧

ଥରେ ଥରେ ଲାଗେ ମନେ ଏ ଜୀବନ ଅମୃତରୁ ଜାତ
ନୁହେଁ ଏହି ମୃତ୍ତିକାର । ଧରଣୀର କଳୁଷ ସଂଘାତ
କଳୁଷ କରିଛି ମୋର ଶ୍ୱେତ, ଶୁଭ୍ର ଦେବତା ଜୀବନ
ବିରୂପ କରିଛି ଦେହ, କଳଙ୍କିତ କରିଅଛି ମନ ।
ମନେ ହୁଏ କିଏ ମୋର ଜନ୍ମ-ସ୍ୱର୍ଗେ ଯେସନ୍ଧ୍ୟା ଅନ୍ଧକାରେ
ସେ କେଉଁ ବିଷମ-ଯନ୍ତ୍ରେ ସ୍ୱର୍ଗଦ୍ୱାର ନନ୍ଦନଧାରେ
ନେଲା ମୋ ମନ୍ଦାରମାଳା ମୋ କଣ୍ଠରୁ କାଢ଼ି ଦ୍ୱେଷଭରେ
ଶରୀରୁ ମୁଛାଇଦେଲା କଳ୍ପ-ପୁଷ୍ପ-ରେଣୁ ନିଜ କରେ;
ସ୍ୱର୍ଣ୍ଣ-ଅରବିନ୍ଦ-କଢ଼ି କେଶୁଁ ମୋର କାଢ଼ି ଦେଲା ଥୋଇ
ପାରିଜାତ-ଗନ୍ଧ ଦେଲା ମୋ ନିଖିଳ ଦେହୁଁ ଧୀରେ ଧୋଇ;

ତାପରେ ନିକ୍ଷେପିଦେଲ ଅନ୍ତରୀକ୍ଷୁ ନିଃସହାୟ କରି
ଧରଣୀର ମୃତ୍ତିକାରେ ପଡ଼ିଲି ମୁଁ ମୃତ ଉଲ୍‌କା ପରି ।
ତାପରେ ମୃତ୍ତିକା-ସ୍ପର୍ଶେ ଏ ମାଟିର ଲକ୍ଷ କୀଟ ସମ
ଆରମ୍ଭିଛି ଜୀବଲୀଳା । ମୋହବଶେ ଭୁଲିଛି ପରମ,—
ମୋ ଦୈବତ ଆଭିଜାତ୍ୟ । ଧରଣୀର ଜୀବନ-ସଂଗ୍ରାମେ
ଜୀଇନ ଦେଇଛି ତାଳ ସଂସାରର ଘୃଣ୍ୟ ଶ୍ରେୟ ନାମେ !
ପଙ୍କମୟ ଏ ଜୀବନ । ନିର୍ଯ୍ୟାତିତ ଶୁଷ୍କ ପୁଷ୍ପ ସର
ମି ପ୍ରମାଣ ମୋର ପ୍ରାଣ ପୂର୍ବଜନ୍ମ ସଞ୍ଚରିତ ସ୍ମୃତି ।

୨

ହାୟ ଲୋ ଧରଣୀ, ତୋର ସ୍ପର୍ଶ ଏତେ ଅଶିବ କପାଇଁ ?
ନିସର୍ଗ-ଅନ୍ତରୁ ଆସି ତୋ ବାୟୁର ତପ୍ତ-ଘ୍ରାଣ ପାଇ
ଜୀବନେ ମରଣ ଲୋଡେ; ମୃତ୍ତିକାର କାମନା-ବାସନା
ଅନ୍ଧ କରେ ଚକ୍ଷୁ ତାର । ଦେବତାର ଅମୃତ-ଚେତନା
ପଦେ ପଦେ ମୃତ୍ୟୁ ଲଭେ । ପ୍ରାଣ-ଘାତୀ ବିଷୟ-ସଂଗ୍ରାମେ
ବିଷମ ଜଞ୍ଜାଳ-ଜାଲ ଘେରି ତାରେ କୃତାର୍ଥତା ନାମେ,
ନତ କରେ ଶିର ତାର; ଅବଶେଷେ, ଆଶ୍ରି ତୋର ତଳ
ଆପଣାର ଘରେ ସେ ଯେ ଚୁମ୍ବେ ପଦ ଜନ୍ମ ମରଣର ।
ଭୂମାର ପରମ ସ୍ପର୍ଶ ହ୍ରାସୁ ଲଭେ କ୍ରମଶଃ ଜୀବନେ
କ୍ରମଶଃ ଘୋଟଇ ମାୟା-ଅନ୍ଧକାର ମରମେ ମରମେ ।
ସତ୍ୟର ସନ୍ଧାନ ଭୁଲେ, ମିଥ୍ୟା ପଛେ ସତ୍ୟ ବୋଲି ଧାଏଁ,
ସତ୍ୟର ସଖ୍ୟତା କଲେ, ଅତ୍ୟାଗ୍ରହ ଅଙ୍ଗୁଳି ଦେଖାଏ ।
ଜୀବନୁଁ ଆନନ୍ଦ ଲୁଟେ, ନ ଲୁଟଇ ବୁଭୁକ୍ଷା ପ୍ରାଣର
ହୃଦୟେ ଉଠଇ ଆଶା, ଲଭିବାକୁ ବ୍ୟର୍ଥତା ମାତର;

ସୁଖ ବୋଲି ଯାହା ମିଳେ, ଦୁଏ ତାହା ଶେଷ ତିକ୍ତତାରେ
ବ୍ୟର୍ଥତାର ଅସନ୍ତୋଷେ ପ୍ରାଣ ମରେ କ୍ଷୁବ୍ଧ ହାହାକାରେ ।

ଅବଶେଷେ ଅନ୍ତରାଳେ ହସ୍ତ ଟେକି ମାଗେ ପରିତ୍ରାଣ
ହେ ଧରଣି, କହ କାହିଁ ସ୍ପର୍ଶ ତୋର ଏତେ ଅକଲ୍ୟାଣ ?

୩

ତଥାପି ଧରଣି ! ତୁମ୍ଭେ ପ୍ରିୟ ଏତେ, ଗୁପ୍ତ ଅକଲ୍ୟାଣେ
ତୋ ମାଟିରେ ମାନବର ଗୁପ୍ତ ସ୍ନେହ, ଉଦାତ୍ତ-ବିଧାନେ !

ଏତେ ସ୍ତବେ ଏହି ମାଟି, ତପ୍ତଦୃଷ୍ଟି, ଟାଣେ ମାନବକୁ
ସତ୍ୟ ଲାଗି, ମୁକ୍ତି ଲାଗି ନାହିଁ ଯାଏ ଚାଲି ଅବସର !

ଊର୍ଦ୍ଧ୍ୱେ ଏ ଅନନ୍ତାକାଶ, କୋଟି କୋଟି ତାରକାମଣ୍ଡିତ
ପ୍ରକୃତି ଶବଳ ଲୀଳା, ବିହଗର ମଧୁର ସଙ୍ଗୀତ,

ଅନ୍ତରାଳେ ଋତୁଚକ୍ର, ଗ୍ରୀଷ୍ମ, ବର୍ଷା, ବସନ୍ତରେ ଯେବେ,
ସ୍ୱପ୍ନାଲୋକ-କ୍ରୀଡ଼ାମୟୀ, ଲୀଳାମୟୀ, ଝଙ୍କାରଇ ଦେବେ,

ସମସ୍ତ ରହଇ ପଡ଼ି, ମାନବର, ଚେତନା ବାହାରେ
ସେ କେବଳ ଦୃଷ୍ଟି ରଖେ, ହେ ଧରଣି, ତୋର ମୃତ୍ତିକାରେ;

ଧରଣୀର ସୁଖଦୁଃଖେ, ଜଞ୍ଜାଳରେ, ପରମ କଲ୍ୟାଣ
ଦେଖେ ସେ । ମରଣ ମଧ୍ୟେ, ଲଭଇ ସେ ଅମୃତ-ଆଘ୍ରାଣ ।

ଜୀବନ-ସଂଗ୍ରାମେ ଯେବେ, ଭଗ୍ନଜାନୁ ଗୃହେ ଆସେ ଫେରି
କାହାର ମୃଣାଳ-ବାହୁ ଶାନ୍ତ ହଏ, କଣ୍ଠେ ତାର ଘେରି,

ଜୟ ଲଭି ସଂଗ୍ରାମରେ, ଫେରିଲେ ବା ପ୍ରବାଳ-ଓଷ୍ଠର
ପରମ ଚୁମ୍ବନ ଲଭି କୃତାର୍ଥତା ଲଭେ ଜୀବନର ।

ପିତାମାତା ବନ୍ଧୁଜନ, ଭଗିନୀର ସ୍ନେହେ ବନ୍ଧନେ
ସେ ଲଭେ ପରମ ମୁକ୍ତି, ପରାଜୟେ ଜୟ ଲଭେ ରଣେ ।

ରୋଗଶୋକେ ପ୍ରତିବେଶୀ, ନେତ୍ରୁ ଢାଳେ, ଅଶ୍ରୁ ତାହା ପାଇଁ
ମାଗିଲେ କରୁଣା ତାକୁ କେହି କେବେ, ନାହିଁ କରେ ନାହିଁ ।

ଅନନ୍ତ ବ୍ୟର୍ଥତା ମଧ୍ୟେ ହେ ଧରଣି, ଏ ଦାନ ପରମ
ମାନବେ ମାନବେ ପ୍ରୀତି, ଏ ବିଶ୍ୱାସ ଏ ସ୍ନେହ-ଧରମ,

ଅନ୍ତରେ ଅନ୍ତରେ ଏହି ସମଧାତ ଦୟା କରୁଣାର,
କୁଟୁମ୍ବ ସମାଜ ମଧ୍ୟେ ଏ ମଧୁର ସମ୍ବନ୍ଧ-ସଞ୍ଚାର,
ସଂଗ୍ରାମ-କଠୋର ଏହି ଅବସନ୍ନ ବିସର୍ଣ୍ଣ ଜୀବନେ
ପରମ ଆନନ୍ଦମୟ କରିଅଛୁ ଅମୃତ-ସିଞ୍ଚନେ ।

ସର୍ବ ଅକଲ୍ୟାଣ ମେଲେ, ହେ ଧରଣି, ତେଣୁ ତୋ ଆଶ୍ରୟ
ପ୍ରିୟ ଏତେ; ସର୍ବବ୍ୟାପୀ ପରାଜୟେ ଜୟ-ସୁଖମୟ ।



## ଶେଷକଥା

୧

ହେ ବିଧାତା,

ଦେଲ କପାଁ ମୋ ଜୀବନେ ଯେତେ ସବୁ ଶକ୍ତି ଅଭିଜ୍ଞତା ।
ତହିଁ ଦେଲ ଦୟା, ଯାହା, ଇଚ୍ଛା କରେ ଧାନା ଏ ଧରାର
ଦେବ ପୋଛି ଏକ ଘତେ ଯେତେ ଦୁଃଖ, ଭୟ, ଅତ୍ୟାଚାର;
ବାହୁରେ ଦେଇଛ କିନ୍ତୁ ଶିଳପୀର ଘୃଣ୍ୟ ଦୁର୍ବଳତା ।
କରିଛ ଶକ୍ତି ମୋ କରେ, ମାରିବାରେ ଦେଖେ ଦୁରବସ୍ଥା ।

ଅନ୍ତରେ ଥାପିଲ ମୋର ସତ୍ୟ ଶିବ ସୁନ୍ଦରର ବର୍ତ୍ତି,
କାହାରେ ଯେ ପଥେ କିନ୍ତୁ ଘୂରିଇଛ ମୋ ଚରଣ ଗତି,
ସେ ପଥେ, କି ଶାଭିପ୍ରତା, କିବା ପାପ, କିଅବା ଅନ୍ୟାୟେ
ଅଙ୍କାରେ ପୂରିଇ ମତେ, କଳୁଷିତ କଲ ତହିଁ, କାୟେ ।
ପାର୍ଥିଛି ମୋ ପାନ ଆତ୍ମା ସ୍ୱରଗର ଜ୍ୟୋତି ସଦାକାଳେ
ଛପଥିଲ ପଦେ ମମ, ଟାଣି ମତେ ମୋହ-ଅନ୍ଧକାରେ ।

ମରମେ ଦେଲ ତ ମୋର ସେନେହର ଜାହ୍ନବ-ଜାହ୍ନବୀ
ଅକାଳେ, ଅକ୍ଷେତ୍ରେ କିନ୍ତୁ ଅବିରତେ ଗଲ ମୁହିଁ ପ୍ଲାବି ।
କାହା ସ୍ନେହ କାରେ ଦେଲ, କାହାପାଇଁ କଲ ଅଭିସାର
ଯୋଗ ଦୋଷେ ସ୍ନେହ ମୋର ହୋଇଗଲା ଘୃଣ୍ୟ ବ୍ୟଭିଚାର ।

ପିତୃମାତୃହୀନ ହୋଇ ଯେବା ସ୍ନେହେ ବାଲ୍ୟ ବଢ଼ାଇଲେ
ଯୌବନରେ ମୃତ୍ୟୁ ତବ ଗୋଟି ଗୋଟି ନେଲା ଧୀରେ ଧୀରେ ।
ସବୁଆଡ଼େ ଭଗ୍ନ ଆଶା, ବ୍ୟର୍ଥତାର ସ୍ତୂପ ଚାରିପାଶେ,
ଲକ୍ଷ୍ୟହୀନ, ଛିନ୍ନଭିନ୍ନ, ଏ ଜୀବନ ହେଲା କେଉଁ ଆଶେ ?
ସଙ୍ଗହୀନ ପ୍ରେତ ପରି ଠିଆ ମୁହିଁ ଆଜ ଜୀବଗ୍ରାମେ
ଦରିଦ୍ର, ଲାଞ୍ଛିତ, ପାପୀ—
ହେ ବିଧାତା, ଘୃଣା ତୋର ନାମେ ।

୨

ଅର୍ଦ୍ଧପଥେ ପୁଚ୍ଛେ ନିଜେ 'ଶେଷ ହେବେ ସବୁ ଅଭିଳାଷ ?'
ଜୀବନ କି ଏହିପରି ଖାଲି ପଦଦଳିତ ଘାସ ?
ଅରଣ୍ୟର ବୃକ୍ଷ ପରି ମୁଁ କି ମଥା ନ ତୋଳିବି ନଭେ
ପ୍ରଭଞ୍ଜନ, ବଜ୍ର, ବୃଷ୍ଟି ସଙ୍ଗେ ଲଢ଼ି ଉନ୍ନତ ଗରବେ ?
ବିଧାତା ନିର୍ଦ୍ଦେଶ ହୋଇ ନିଜେ ମେଲି ଘଟଣା ସରିତେ
ହେଉଥିବି ଚାଳିତ କି ବାରମ୍ବାର ହରାଇ ବ୍ୟକ୍ତିତ୍ୱେ ?
ବିଦ୍ରୋହ ଆସିଛି ଆଜ, ଯେ ବିଦ୍ରୋହ ଲାଞ୍ଛନାରୁ ଆସେ
ବାଧାପ୍ରାପ୍ତ ସ୍ରୋତ ସମ ଧାଏଁ ଯାହା ବ୍ୟଗ୍ର ମୁକ୍ତି ଆଶେ ।
ଆଜି ମୁଁ ଉଷ୍ମରେ ମନେ ପୋଛିଦେଇ ସକଳ ଅତୀତ
ଉଠିବ ମୋ ଜୀବନରୁ ନବ ଏକ ମହାନ ସଂଗୀତ ।
ପାପ ଯାହା, କୁତ୍ସିତ ଯା, ଲାଞ୍ଛନା ଯା, ଫିଙ୍ଗି ତା ବନ୍ଧନ,
ସତ୍ୟେ, ଶିବେ ଶବଳିତ କରିବି ଏ ବିକଳ ଜୀବନ ।
ଖିଆଲୀ ବିଧାତା ଲାଗି ଅନୁଯୋଗ ଅବା ଅଭିଯୋଗ
ନ ରଚି —କଷଟେ, ଲୁହେ, ନର ଲାଗି ରଚିଯିବି ଯାଗ ।

— — —

# ଦେବ-ପୂଜା

ପୁରୋହିତ, ଶୁଦ୍ଧପୂତ ହୋଇ, ଦେଉଳରେ କା ପୂଜା କର ହେ ?
ସୃଷ୍ଟି ଯାର ହୃଦୟର ଆଲୋକ, ସେ ଢଅଁ କି ଅନ୍ଧକାରେ ରହେ ?
ଅନ୍ଧକାରେ ଆଖି ବୁଜ ତାଙ୍କୁ, ଦେଖିବାରେ କପାଁ ଏ ପ୍ରୟାସ
ଆଖି ମେଲ ଦେଖନା ଆଲୋକେ କି ସୁନ୍ଦର ତାହାର ପ୍ରକାଶ ।
ଅନ୍ତରରୁ ଅନ୍ତରୀକ୍ଷେ ବ୍ୟାପି ବିରାଜିତ ଯେ ଭୁବନେଶ୍ବର
କ୍ଷୁଦ୍ର, ଜୁର୍ଣ୍, ଅନ୍ଧକାର ଗୃହେ, ତାର କପାଁ ଆରାଧନା କର ?

ଦେଖ ଦେଖ ଆଗେ ପଛେ ତବ, ଶତ ଶତ ନରନାରୀଗଣ
ଯାଙ୍କୁ ତୁମେ ପଛେ ଦେଇ ଗଲ, ଦେବତାରେ ଲଭିବ ବ୍ରାହ୍ମଣ ?
ଦେବତାଙ୍କୁ ବାହାରେ ରଖିଲ, ଛୁଇଁବାକୁ ଡରିଲ ତାହାରେ
କାଲେ ତୁମେ ଗଲ ପୂଜିବାକୁ ଦେଉଳର କ୍ଷୁଦ୍ର ଅନ୍ଧକାରେ ?
ପାପ ଏ ଯେ, ପୁଣ୍ୟ କେ କହିଲା, ସେ ପାପରୁ ମୁକ୍ତ ସେ ଦେବତା
ଯେତେ ଢଅ ପୂଜା କା ଆରତି; ତେଣୁ ସେ ଯେ ନ କହୁଛି କଥା ।
ଏଇ ପାପେ ଜାଣି ହେ ରହିକି, ତେଣୁ କଲେ ଦେବତା ପ୍ରୟାଣ
ଆଜ ଖାଲି ଦେଉଳେ ଦେଉଳେ ବିରାଜିତ ଏ କାଷ୍ଠପାଷାଣ ।

ଏବେ କାଠ ପଥର ନ ପୂଜ, ଆସ ପୂଜ ଜୀବନ୍ତ ଦେବତା
ଯା ଆଖିରୁ ଲୁହ ଯିବ ବହି, କହିଦେଲେ ପଦେ ମଧୁ କଥା ।

ବନ୍ଦ କର ମନ୍ତ୍ର ପାଠ ତବ, ବନ୍ଦ କର କର୍ପୂର ଆରତି
ଦେଉଳର ବାହାରେ ଦେବତା ହାତ ପାତି ଉଭା ରହିଛନ୍ତି ।

ଦେବ-ଭୋଗ ନରଲୋକରେ ଢାଳ, ଦେବ-ସେବା ହେଉ ମାନବରେ
ଦେବତାର ଦରଶନ ଲଭ, ମାନବର ପ୍ରତି ଘରେ ଘରେ ।

ସେ ପୂଜାରେ ମୂକ ଭଗବାନ, ବାକ୍‌ମୟ ରୂପରେ ହୋଇବେ ।
ଢାଳିଁ ହୋଇ ପ୍ରତି ପ୍ରାଣବେଣୀ ନାରାୟଣୀ ବାଣୀ ଶୁଣାଇବେ ।

ଆସ ଭକ୍ତ, ଆସ ପୁରୋହିତ, ନ ପଶ ହେ ଆଉ ଅନ୍ଧକାରେ
ବସୁଧାର ବିମଳ ଆଲୋକେ, ଖୋଜ ଆଜ ମୂର୍ତ୍ତି ବସୁଧାରେ ।



# ତୁମର ପ୍ରୟୋଜନ

ନିବିଡ଼ ଦୁଃଖାନଳେ ଜଳି ମୁଁ ମରେ ପଛେ
ତୁମରି ଲୀଳା ପରକାଶୁ ହେ
ନିବିଡ଼ ନିରାଶାର ଅନ୍ତ ଭେଦି ପ୍ରଭୋ
ଗଭୀର ବିଶ୍ୱାସ ଆସୁ ହେ ।

ମୋର ଏ ଜୀବନର କ୍ଷୁଦ୍ର ନିଜ-କଥା
ମୋର ଏ ଆପଣାର ତୁଚ୍ଛ ପ୍ରାଣ-ବ୍ୟଥା
ସେ କଥାଁ ଆଡ଼ୁଆଳ କରିବ ମହାଲୋକେ
ଫେରାଇ ନେବ ତବ ପାଶୁ ହେ ।

ତୁମର ମର-ହୀନ ସୃଜନ ଗୀତ ଲାଗିଁ
ମରଣ ଯଦି ଲୋଡ଼ା ପଥରେ
ମୋ ପରି କୋଟି କୋଟି ପରାଣ ପ୍ରସ୍ତୁତ—
ପିଷ୍ଟ ହେବେ ତବ ପଦରେ ।

ଆଜି ମୋ ପ୍ରାଣେ ପ୍ରଭୋ ସେହି ତ ଆୟୋଜନ
ବକ୍ଷେ ତବ ଲାଗି ପ୍ରାଣର ଇନ୍ଧନ
ମୋର ଏ ହୋମାନଳ-ଦଗ୍ଧ-ଚିତାଧୂଳି
ଲୋଡ଼ାରେ ତିଳକ ହେଲେ ଆସୁ ହେ ।

———

## ଉଦାସୀ ପାନ୍ଥ

ସେଦିନ ସେ ସନ୍ଧ୍ୟାକାଳେ ଆସିଲେ ଅତିଥି,
ସରଳ, ସୁନ୍ଦର ଯୁବା, ସୁଠାମ ଗଠନ,
ନୟନେ ରହିଛି କୋଟି ଲୋଚନର ପ୍ରୀତି,
ଗୌର କରେ ଜଳୁଥିଲା ସୁବର୍ଣ୍ଣ କଙ୍କଣ ।

ପାନ୍ଥଶାଳା କ୍ରୀତଦାସୀ—ସେବିକା ସବୁରି
ସେ ମାଗିଛି ସେବା ମୋର ଦେଇଛି ମୁଁ ତାରେ,
ନ ମାଗି କିଛି ସେ ପାନ୍ଥ, ନେଲେ ସବୁ ଚୁରି,
ଦେହ ତ ଇତରଙ୍କର—ସେ ନେଲେ ହୃଦୟାରେ ।

ନ ମାଗି କିଛି ସେ ପାନ୍ଥ ଚଳିଲେ ସ୍ୱପଥେ
ପାନ୍ଥଶାଳ ଦ୍ୱାର ଧରି ରହିଲି ଅନାଇଁ,
ବୁକୁ ମୋର ତାଙ୍କ [illegible] ଗଲା ମନୋରଥେ,
ସର୍ବସ୍ୱ ଚରଣେ ଥୋଇ, ଆଣିବ ମଣାଇ ।

ସେ କି ଗୋ ଫେରିବା ଜନ ?—ଚଳିଲେ ସଧୀରେ,
କ୍ରୀତଦାସୀ ଅଶ୍ରୁ ରେଖା ଚୁମ୍ବିଲା ମହୀରେ ।

———

## ଘର ପଣା

୧

ଗୋକୁଳ ନାଏକ ଆମର ଗାଆଁର ଜାତରେ ଚଷା
ବୃଷ ଖଣ୍ଡି ବିନୁ ନ ଥିଲା ତାହାର ଆନ ବେବସା ।
ଚଳିଶିଆ ବୟସ, ମୁହଁ ହସ ହସ, ମୁଣ୍ଡରେ ବାଳ
ପେଣ୍ଡା ହୋଇ ବନ୍ଧା; ବେକରେ ପିନ୍ଧିଛି ରସୁଣୀ ମାଳ ।
ଏକସଙ୍ଗ ଲୋକ— କେଉଁ ବାପ ମା'ଙ୍କ ସରିଛିକାଳ,
ଅପୁତ୍ରିକ ଘଣ୍ଡ ଖୁଡ଼ୀ ଚଳାଉଛି ସଂସାର ଭାର ।
ବାର ଦଣ୍ଡି ମାପେ ଜମି ବାର ମାଣ, ଚୋଟାଏ ଅଛି
ଲକ୍ଷ୍ମୀ ରୂପୀ ଦୁଇ ଗୋଧନେ, ଗୁହାଳ- ଘର ପୂରିଛି ।
ମାଆଠାରୁ ବଳି ଖୁଡ଼ୀଙ୍କ ଆଦର, ହଳକୁ ଗଲେ
ବୃଣ୍ଟି ଆସୁଥିବେ ବାରିଆଡ଼େ ଯାଇ ଥରକୁ ଥରେ ।
ବନ୍ଧୁ ଘର ଗଲେ ଝୁରି ହେଉଥିବେ ଆସିବ କେବେ
ସୁଖେ ପେଷିବାକୁ ଭାବୁଥିବେ ଗାଆଁ ମାଳମାଧବେ ।
ଅତହିଁ ସୁଧାର ଗୋକୁଳ ନାଏକ ଗାଆଁଟି ସାକେ
ମୁହଁ ଫୁଲଫୁଲ ହୋଇ ନାହିଁ ଦିନେ ତାହାର ସାଥେ ।
ବେଳ ବୁଡ଼ୁ ବୁଡ଼ୁ ସନ୍ଧଣଏ ଖୁଡ଼ୀ ପଡ଼ିଲ ଛାଟି
କେବେ ସେ ସାଇରେ ପଡ଼ଶାଏ ଶୁଣି ନାହାନ୍ତି ପାଟି ।

୨.

ବାଇଶି ବରଷ ଭେଣ୍ଡା ଆସି ହେଲା ଦେଖୁ ଗୋକୁଳ
ବାଟକୁ ଅନାଇ ହୋଇ ଯାଉଛନ୍ତି, ଭାବଇ ଖୁଡ଼ୀ ।

ଗ୍ରାମର ଯେ କେହି ପୁରୁଷା ମାଇପି ଦେଖିଲେଁ ତାରେ
କଥା ହେଉ ହେଉ, ମଙ୍ଗଳାକାଙ୍‌କ୍ଷିଣୀ ରୂପେ ପଚାରେ —

"ହଇଗୋ ଗୋକୁମା ! ଆଖି ବୁଜନ୍ତ କି ? ପଡ଼ୁନ ମନେ ?
ଗୋକୁଳ କ ଆଉ ପିଲାଟି ଅଛି ଗୋ ଦେଖିଲ କେନେ ?"

ଭାଳିଲେ ଖୁଡ଼ୀମା "ଭେଣ୍ଡା ହେଲା ପିଲା ସତକୁ ସତ
ବାଡ଼ୁଅ ଉଠିଲେ ମତେ ସିନା ଦୋଷ ଦେବ ଜଗତ !"

ହେଲେ—ମିଳେ କାହିଁ ମନଲାଖି ତାର ଠିକଣା ପିଲା
ଯହିଁ ଯିବ ପୁଣି, ପଚାରିବେ ଲୋକ ଥିଲା, ନ ଥିଲା ?

ଏଇ ମାଘ ମାସେ ବାହାର ଯୋଗ ଅଛି ଶୁଣିଲେ ଖୁଡ଼ୀ
ବରଷେ ନକ୍ଷତ୍ର ଫଳା ତା ପରେ ଗଲେ ଏ ସୁଯୋଗ ଦୂର ।

ଭାବିଲେ ମନରେ— ପାଣିଫୋଟକା ଏ ଜୀବନ ସିନା
କେ କହି ପାରିବ କାଲିକି ଥିବ ମୁଁ ନ ଥିବ କିନା ?

ଯାହା ହେଉ ପଛେ ପିଲାକୁ ମୋହର କରିବି ବାହା
ସାହା ଦୁଅ, ଦୁଧ- ଲିଆ ଦେବ, କହୁ- ଣେଇ ବୁଢ଼ୀମା !

ସାତ ପାଞ୍ଚ ଲୋକ କଥାରେ ଖୁଡ଼ୀମା କରିଲେ ସ୍ଥିର
ପାଞ୍ଚ ମାଣ ଜମି, ଗୋଧନ ବଳକଲେ ବୁହାଇ ନୀର ।

ଆଖି ପୋଛୁ ଦେଇ ଶୁଣିଲୁ ପଢ଼ଣା ଆଗେ କହିଲେ —
ବାଲି ଖୁଣି ଜମି ମୋ ହାତେ ଆସିବ ଗୋକୁଳ ଥିଲେ ।



ଯଥାକାଳେ ଘରେ ବୋହୂଟି ଆସିଲା; ନ ଥିଲା ହିଂସ୍ର,
ହେଲେ କସ ହେବ ଚମ୍ପା କାଠି ପରି ଜଳୁଛୁ ଦନ୍ଦ ।
ବୋହୂର ପ୍ରଶଂସା ଖୁଡ଼ୀ-ମୁହେଁ ଆଉ ଧରୁଇ ନାହିଁ
ରନ୍ଧଣାରେ ତାର ସାଇ ପଡ଼ିଶାରେ ସରିସା କାହିଁ ?

ହେଲେ, ଦେଖୁଁ ଦେଖୁଁ ନଅଣ୍ଟ ପଡ଼ିଲା ଆଖିରେ ଧରା
ଜମି ସାତ ମାଣେ ବରଷକ କାହୁଁ ହୋଇବ ସରା ?
ଅଭାଗ୍ୟକୁ ପୁଣି ବିବାଦ ବରଷ ପଡ଼ିଲା କାଳ
ପେଟ-ପୋଷା ଆଉ ରାଜ-କର ପୁଣି ହିଙ୍କିଲା ଡାଳ ।

ଦେଖୁଁ ଦେଖୁଁ ପୁଣି ଖୁଡ଼ୀମା କୋଳରେ ଧଇଲେ ନାତି
ତା ପାଇଁ ତ ପୁଣି ଖରଚ ଲାଗୁଛି ପାଞ୍ଚଲେ ରାତି ?
ଟାଣଟଣୁ ଆଉ ନ ସମ୍ଭ ଗୋକୁଳ ଘରେ ଜଣାଇ
କୋଡ଼ିଏଟି ଟଙ୍କା ଆଣିଲା କରଜ ମୁଣ୍ଡ ନୁଆଇଁ ।



ଏଇପରି ଗଲା ଦୁଇଟି ବରଷ ଆପଣା ସୁଖେ,
ସାହୁକାର ଋଣ ସୁଝାଇଛୁ ଦସ ଗୋକୁଳ ମୁଖେ ।
ଭଉ ମୁଣ୍ଡ ତାର ଏଇ କେତେ ଦିନେ ଯାଇଛି ନଇଁ
ଦରିଦ୍ରର ଆଉ କି ଗତି ଧର୍ମର ନାଡ଼ ନ ସମ୍ଭ ?

ବୁଝାସ୍ତ କରନ୍ତେ ସାହୁକାର ସେବେ ବସି ଦୁଆରେ
ଅଣା ପାଞ୍ଚ କଷ୍ଟି ମସାକ ଟକର- ବୁଢ଼ଧି ହାରେ,
ବଡ଼କୋଡ଼ ସଞ୍ଚକ ଦେଣା ଦେଲା ଫେର; ଗୋକୁଳ ସ୍କନ୍ଧେ
ଖୁଡ଼ୀ-ମୁଖେ, ଖୁଡ଼ୀ ହାତ ଚୁଲାଇଲେ ନାକର ବେଳେ;

କହୁ ସୋଛୁ ଖୁଣ୍ଟୀ ମହାଜନେ ମହ- ଲତ ଲଗାଇ
ଠାକୁରେ ଘାଟିଲେ ସେତ, ସେ ଦିନର ଭୋଗର ପାଇଁ ।

ହେଲେ, କେତେ ଦିନ ପାରିବେ ଏପରି ଠେଲି ଚପଣ୍ଡି
ଘରେ ପୁଣି ଏଣେ ଚୁଲି ନାହିଁ ଜଳେ, କାନ୍ଦିଲେ ସତୀ—

“ହାଇରେ ବିଧାତା, ଯେତେ ଅଦୃଷ୍ଟର ତୋହରି ହାତେ,
ଯେତେ ଦୁନ୍ଦଦଣ୍ଡ ଲାଗି ପଡ଼େ ଖାଲି ଗରିବ-ମାଥେ !

କୋଡ଼ି କୋଡ଼ି ଟଙ୍କା ଆଖି ଆଗେ ଫିଙ୍ଗି ଦଅନ୍ତି ଲୋକେ
ଦୁଇ କୋଡ଼ି ପାଇଁ ମୋ ପିଲା କୁଟୁମ୍ବ ରହିବେ ଭୋକେ !

ଜନମ ଆଗୁଁ ଯେ ଖୀର ରଖିଥାଇ ଜନନୀ-ଥନେ
ଏ ଛୁଆମାନ ସେ ପାଇବେ କିପରି ଦେଖେ ନୟନେ ?

ମଣିଷ କରି ଏ ଗରିବ ଜନମ ଦେଲ କିପାଇଁ
ଦିନେ ହେଲେ ସୁଖ କିପରି, ପରାଣ ଜାଣିଲା ନାହିଁ ।

ଭାଗ୍ୟବନ୍ତ ଜନେ ଖୁଲ୍ଲୁଁ ସୁନାପତ୍ରୁ ଫୁଟଇ ଚଳେ
ସେ ଭୋଗ ନ ମାଗେ —ମୁଖେ ଦୁଇପ୍ରାଣୀ ପାଆନ୍ତୁ କଳେ ।

ଏଇ ଅନୁଗ୍ରହେ ବିଧାତାଙ୍କ ସନ୍ନି- ଯାଏ କ ଧନ ?
କ ସୁଖ ତାହାର ଏତେ ହତଶିଷ୍ଟ କରି ଜୀବନ !”

ସେ ଦିନ ସକାଳେ ହଠାତ୍ ଗୋକୁଳ ଖୁଣ୍ଟିରେ ଡାକ
କହିଲେ “କେମନ୍ତେ ମହାଜନେ କହ ଚଳିବା ଫାଙ୍କି ?

ଘରେ ବସି ଆଉ, ଲାଭ ନାହିଁ; ଏଇ ପୁନଅଁ ସରି
ଯାଇଛୁ ବେଙ୍ଗାମ ନଜର ଏ ଯୋଡ଼ା କରମ ଧରି ।

ଅନନ୍ତ ସାଥିରେ ପାଞ୍ଚ ସାତ ଆଉ ଗାଆଁର ଲୋକ
ବରଷକେ ପୁଣି ଆସିବି ମୁଁ ଫେରି ନ କର ଶୋକ ।”

ଦେଖିଲେ ଖୁଡ଼ୀମା ଅସ୍ଥି ନାସ୍ତି ପାଇଁ ନାହିଁଛି ବାଟ
ଘରେ ଦାରିଦ୍ର୍ୟର, ବାହାରେ ସାହୁର ଲାଗିଛି ଲାଟ ।
କଥା ଶୁଣି ଖାଲି "ବାପା ମୋର"—କହି କାନ୍ଦିଲେ ସଖା
ପଚାଶ ବରଷ ଭେଣ୍ଡା ମୁଣ୍ଡ ପୋତି ବଳକ ଅନ୍ତ ।



ଗୁଡ଼ିଆ ଗୋକୁଳ ପାଆଁ ତାର ପିଲା ସାଙ୍ଗ ଗହଳେ
ମନ ତା ଉଚ୍ଛଳ ଖୁଡ଼ୀ-ପୁଅ-କୋଳ୍ ସ୍ୱଚ୍ଛ ସରେ ।
ଦିବସଟି କଟେ ଆନମେଳେ ପିଲା ସାଥୀ ମେଳରେ
ଏକୁଟିଆ ହେଲେ ନୟନୁ ବହନେ ଲୋତକ ଗଳେ ।
ଜନମରୁ ବଳି ଖୁଡ଼ୀ ରଖି ଦୂରେ, ଗୁଡ଼ ବାଳକ
କପଟ ବିଦେଶେ ଗୋକୁଳ ନାଏକ କାଟେ କାଳକ ?
ଦୂର ସେ ବିଦେଶେ ଏ ଶକ୍ତର ପଥ ପଡ଼େ ବିପଦେ
କିଏ ଆସି ପ୍ରାସ ଘୁଞ୍ଚାଇବ, ହାତ ଆଜୁଁଳି ପଦେ ?
ଘରେ ଖାତ ନାହିଁ ତିନ ପ୍ରାଣୀ ଚାଲ- ଥିବେ ଉପାସେ
କିଏ ଆଣି ଦେବ ? ଗୋକୁଳ ତାଙ୍କର ନାହିଁ ତ ପାଶେ ।
ଭେଣ୍ଡା ହେଲା, ଗୁଡ଼ ନ ଥିଲା କେବେ ସେ ଜନମମାଟି
ଘର କଥା ମନେ ପଡ଼ିଗଲେ ଛାତି ଯାଉଛି ଫାଟି,
ପ୍ରାଣହୀନ ମାଟି- ନଡ଼ା-ଇଟା ଗଢ଼ା କୁଡ଼ିଆ ପୁଣି
ବନ୍ଧୁଜନ ପରି ଚିତ୍ତକୁ ଟାଣଇ; ତାହାରେ ଗୁଣି
ଗୋକୁଳର ମନ ଉଚ୍ଛନ୍ନ ହୁଅଇ ଫେରିବା ପାଇଁ
ନୂଆ ଦେଶ ନୂଆ ସୁଖ ଦେଖି ମନ ଧରଇ ନାହିଁ ।
କାଲି ସେ ଚଢ଼ିବ ବୋଇତରେ, କଷ୍ଟ- ଗଲା ମିଶି ସ;
ତା ଶୁଣି ମନରେ ଦ୍ୱିଗୁଣ ପଡ଼ିଲେ ବାଳକ, ହସି ।

ଗଣ୍ଡ ତାର ଓଦା  କଣ୍ଠ ଶୁଖାଇଲା  ନୟନ ନୀରେ
ଗଣ୍ଡିଏଟି ମୁଣ୍ଡ-  ଛଳେ ଦେଇ ଶୋଇ-  ପଡ଼ିଲା ଧୀରେ ।
ଉଦ୍ଧି ଆଉ ଏକ  ମିସ୍ତ୍ରୀ ଆସି ଯେବେ  କଲା ଗଣନା
ନ ମିଳେ ଗୋକୁଳ;  କାନ୍ଦି ଉଠେ ନାନ୍ଦି  ପଡ଼ିଲ ଜଣା ।

୨

[illegible]
ସେହ୍ନ ଦହୁଁ କେଣ୍ଟି  ଦେଖିନ ତା ଚାହିଁ  ସମସ୍ତ ହେବାର
ପିଲାପାଇଁ କଟକ  ଫୁଟାଇବା ପାଇଁ  ଲଗାଇ ଚୂଳି
ବୋହୂ ଘରେ ବୋହୂ  ଶାଶୁ ଶାଶୁଘରେ,  ଯାନ୍ତି ମୁଚୁଳି ।
ଲୁହ ପୋଛୁ ପୋଛୁ  ଡାକୁଛନ୍ତି ଖୁଡ଼ୀ  ଦାଣ୍ଡ ଦେବତା
"ଧୂଳି ଗୋଷ୍ଠ ଧରି  ମୋ ପିଲା କପରି  ଫେରୁ ଆସନ୍ତା !
ଜନମୁଁ ମୋ ପିଲା  ଘର ଗୁଣ୍ଡ କାନ୍ଥି  ଯାଇନ ଦୂରେ
ଜାହା ଆଜ୍ଞା ମାନ  ଦେହ ଝାଙ୍କି ଦ ମୋ  ପିଲା ତା ମୂରେ ?
ସମସ୍ତ ପୁରୁଷ  ଏଇ ଦୂଇ ଧରି  କାଟିଲେ କାଳ
ମୋର ପିଲା ଏକା  ପେଟ ପାଇଁ ହେଲା  ବଗିଆ ପାଳ ।"
କାନ୍ଦ କାନ୍ଦ ଖୁଡ଼ୀ  ଡାକୁଛନ୍ତି ଖାଲି  ଦାଣ୍ଡ ଦେବତା
ଯେ ଗୋଷ୍ଠେ ଯାଇଛୁ  ସେଥି ଗୋଷ୍ଠେ କେଜାଣି  ଫେରି ଆସନ୍ତା ।
ସତକୁ ସତ ଗୋ  ସାଞ୍ଜ ଘନ ଘନ  ହେଉଣୁ ସନ୍ଧ
ଜଳୁ ଜଟି ଖୁଡ଼ୀ  ଜଳାଉଁ ତଉଁଷ-  ମୂର୍ଚ୍ଛିତେ ବତି,
ଆଗେ ଆସି ଭଉଣୀ  ଦେଖିଲେ ଗୋକୁଳ  ଧୂଳି ଚରଣେ
ପରତେ ନ ଆସେ  ନ ଦେଖି ନୟନେ  ଗୁହାଁଲେ କ୍ଷଣେ ।
କାଳି ଫିଙ୍ଗି ଦେଇ  'ମୋ ସଙ୍ଖାଳି' ବୋଲି  ବୋହୂକୁ ଡାକି
ଗୋକୁଳର ଦେହ  ଆଉଁଷି କୋଳେ ତା  ଥୋଇଲେ ନାକି ।

ମହଲତ ଶେଷେ    ସାହୁକାର ଯେବେ    ଡାକଲା ହାଙ୍କି
ଭିତରୁ ଖୁଡ଼ୀମା    କହିଲେ ସେ ଧନ    ଉଚରେ ଡାକ—
"ନେଲେ ପଚ୍ଛେ ନଅ    ବାକୀ ସାତ ମାଣ    ନ କର ଘଣ୍ଟା,
ନ ହେଉ ମୋ ପିଲା    ପାଞ୍ଚ ସାତ ପର    ଏ ହଟହଟା ।"



## ବିଶ୍ୱଦେବାଳୟ

ଶୁଣିଥିଲି ଏଇ ବିପୁଳ ବିଶ୍ୱ ପରେ
ବିରାଟ ଏକ ଦେଉଳ କାହିଁ ଠିଆ,
ଲକ୍ଷ ଲକ୍ଷ ଭକ୍ତ ଆଜଯାଏ,
ଅମୃତର ନିତ୍ୟ ଷିଆପିଆ ।

ଜିଜ୍ଞାସିଲି ଚହୁଁ ମୁଁ ଅନେକ
ପାନ୍ଥ ଜନେ ଦେବାଳୟ କଥା,
କେଉଁଠି ଅଛି ? କେତେ ଦୂର ତା ପଥ ?
କିଅବା ରୂପ ପୂଜିତ-ଦେବତା ?

ଅନେକ ପାନ୍ଥ ବୋଇଲେ ବିସ୍ମୟେ,
"ଏପରି ଏକ ଦେଉଳ ଅଛି କାହିଁ,
ଶୁଣି ତ ନାହୁଁ ପୂର୍ବେ କେଉଁଠାରେ,
ପାଗଳ କିଏ ଦେଉଛି ବତାଇ ।"

ଶେଷରେ ଏକ ଆସିଲେ ଭକ୍ତ ଜନ
ଦୃଷ୍ଟି ତାଙ୍କ ପଡ଼ିଲା ମୁଖେ ମୋର,
କହିଲେ ଆପେ, "ଖୋଜୁଛ ବୋଧେ ପାନ୍ଥ,
ଧରଣୀ ପରେ ଦେଉଳର ଖବର ।

ପାଇନ ଦେଖା ? ପାଇବ କେମନ୍ତେ କହ,
ପାଷାଣେ ଗଢ଼ା ମୂର୍ତ୍ତି ତ ତାର ଦେହ
ବସ୍ତୁ ଯେନ ନ ହୁଏ ତା ପରିମାପ,
କ୍ଷୁଦ୍ର, ବିରାଟ, ବିଚିତ୍ର ସେ ଗେହ ।

ତରଣୀଚନ୍ଦ୍ର ଅନ୍ତରୀକ୍ଷ ଭେଦି
ମହାବ୍ୟୋମ ସ୍ପର୍ଶେ ସେ ଦେଉଳ
ଏଇ ଯେ ବାସେ ପୂଜାର ବେଦୀ ତାର,
ନକ୍ଷତ୍ରରେ ଆଲୋକିତ ତା ଚୂଳ ।

ଅରୂପ ତହିଁ ଦେବତା ଅଛି ବସି
ଅପୂର୍ବ ତାର ନେତ୍ର ସଦା ମେଲି,
ଏ କଥା କେବେ ନୋହିଛି ଶ୍ରୁତିଗତ
ହଠାତେ ତହୁଁ ଆସିଛି କେହି ଫେରି ।

ଖୋଜ ହେ ବାପ"—କହି ସେ ଭକ୍ତ ପାନ୍ଥ
ଚକିତେ ଗଲେ ଜନଗହନେ ମିଶି,
ଶୁଣିଲେ ନାହିଁ ଡାକିଲି ଯେତେ ଉଚ୍ଚେ,
ପାଇଲି ନାହିଁ ଖୋଜି ମୁଁ ଦଶ ଦିଶି ।

ଅଜ୍ଞ ପାନ୍ଥ ସେହିକୁ ଅନ୍ୱେଷଇ
ଧରାରେ ସେହି ବିରାଟ ଦେବାଳୟ,
ଏଯାଏ ମୁଁ ତ ଦେଖିଲି ନାହିଁ ତାହା,
ଖୋଜୁଛି ନିତ୍ୟ ପୂରଇ କୁତୂହଳ ।

ଜଳର ଘାଟେ ଅନାଇ ରହିଲେ ନିତି
ପବଣ କଥା ଶୁଣାଇ କହେ ତାରେ
ଅଦେଖା ସେହି ଦେବତା ଶୁଣେ କାହିଁ ?
କହଇ ବ୍ୟଥା ଲାଗଇ ମୋ ହୃଦୟରେ ।

ତଥାପି ନିତ୍ୟ ଖୋଜନ୍ତି ଗାନ୍ଧି ମନ୍ଦି,
ଅରୂପ ସେହି ଦେବତା ପୁରଦ୍ୱାର,
ଅତୃପ୍ତ ମୋର ପିପାସା ଅଛି ପ୍ରାଣେ,
ଦେଖିବ ଆଖେ, ଶୁଣିବ ବାକ୍ୟ ତାର ।



# ଚିଲିକା

ରମ୍ଭ ରେ ଆଗ୍ନେୟ ରଥ, ଦେଖିବ ସୁନ୍ଦରୀ
ତା ନୀଳଲୋଚନେ, ନୀଳ-ଚକ୍ରବାଳ ଧରି
ନୀଳ ଜଳରାଶି କେନ୍ଦ୍ରେ ଉନ୍ମୁକ୍ତ ଶୋଭାରେ
ଜଘନେ ରହିଛି ଶୋଭି । କାନ୍ତ କଣ୍ଠଛାଟେ
ରୂପାସ୍ୱାଦୀ ରାଧାନାଥ କାବ୍ୟ-ଚନ୍ଦ୍ରକାନ୍ତ
ବର୍ଣ୍ଣିଛନ୍ତି ଶୋଭା ଏହି ରୂପସୀ ହ୍ରଦର,
ପଢ଼ିଛି ସେ କାବ୍ୟ ପ୍ରିୟା—ତେଣୁ କୁତୂହଳୀ
ରଖ ରଥ, ପାର୍ଶ୍ୱେ ନେତ୍ର ପାର୍ଶ୍ୱତର କରି
ଦେଖୁ ଶୋଭା ମୋ ପ୍ରେୟସୀ; ତା ନୀଳନୟନ
ହ୍ରଦ-ନୀଳିମାରେ ମିଶୁ । ଆକାଶ-ରଞ୍ଜନ
ତା ନେତ୍ର ପ୍ରଶାନ୍ତ-ଜ୍ୟୋତି ଶାନ୍ତ ହୋଇ କ୍ଷଣେ
ହ୍ରଦ-ବକ୍ଷେ ମିଳିଯାଉ । ପ୍ରକୃତି-ପୂଜନେ
ପ୍ରକୃତି-କୁମାରୀ ଏହି କ୍ଷୁଦ୍ର ରୂପସୀର
କୌତୂହଳ ନକ ଶ୍ରେଷ୍ଠ ବଚନୁଁ କବର ?

———

# ପ୍ରିୟଭୂମି

ଏଡ଼ାଇ ଏ ଅଗ୍ନି-ବଧୂ ଯିବ ସେହି ଦେଶେ
ବିସ୍ତୀର୍ଣ୍ଣ, ପ୍ରକୃତି ଯହିଁ ଦିଗମ୍ବର ବେଶେ
ବୃକ୍ଷହୀନ-ହେମକାନ୍ତ-ସିକତା ବିସ୍ତାରେ
ମହୋଦଧି ତଟ-ପ୍ରାନ୍ତେ । ସିନ୍ଧୁ-ସୈକତାରେ
କ୍ରୀଡ଼ାନ୍ତ ନଶୀଥେ ଯହିଁ ଜଳକନ୍ୟାଗଣ
କଆଳୁଞ୍ଚେ ଲୁଚକାଳି, କୋମଳ ଚରଣ
ବୁଡ଼େ ନାହିଁ ବାଲୁକାରେ । ବର୍ଷାରମ୍ଭେ ଯହିଁ
ପୁନ୍ନାଗ କୁସୁମ ଗନ୍ଧ ଘ୍ରାଣ ଦିଏ ବହୁ
ବିରହିତ ତରୁଣର । କ୍ଷୁବ୍ଧ ପାରାବାର
ଢାଳେ ଚୂର୍ଣ୍ଣ-ମଣି-ଚୂର୍ଣ୍ଣ ଫେର୍ଣ-ଉର୍ମିକାର
ସେ ଭୂମିର ପଦତଳେ, ତା ଗୁରୁ ଗର୍ଜନ
ରଚେ ଯହିଁ ଶାଶ୍ୱତିକ ମୃଦଙ୍ଗ ଘୋଷଣ ।
ସେହି ଭୂମେ ମୋ କୁଟୀର—ସେ ଦେଶ-କୁରଙ୍ଗୀ
ଚଳ ସଖି, ତୁମଠାରୁ ଶିଖିବେ ଭ୍ରୂଭଙ୍ଗୀ ।

———

## ସରମ

ସେ ଦିନ ପୂର୍ଣ୍ଣିମା ନିଶା — ରଜତ-ଶବଳ
ହସୁଥିଲା ଧରଣୀର ସର୍ବାଙ୍ଗ ଆବରି;
ଅର୍ଦ୍ଧ ଯାମେ ତନ୍ଦ୍ରରେ ଶୀତ-ସମୀରଣେ
ସହସା ଭାଙ୍ଗିଲା ନିଦ୍ରା । ଧବଳ ଶୟନେ
ଶାୟିତା ମୋ ଶଯ୍ୟା-ପାର୍ଶ୍ୱେ ଦେଖିଲି ଭ୍ରମରେ,
ପ୍ରବାଳ ଲତିକା ସମ ସିନ୍ଧୁ ସୈକତରେ,
ହେଳାରେ ହୋଇଛି ବ୍ୟସ୍ତ ବାସ ଶ୍ରୀଅଙ୍ଗର—
ଅନାବୃତ ସ୍ୱର୍ଣ୍ଣଦେହ । ଶୁଭ୍ର ଚନ୍ଦ୍ର-କର
ନିଭୃତେ ଚୁମ୍ବୁଛି ସର୍ବ ଦେହ ମୁଖ ଦେଇ
ପ୍ରେମାର୍ଦ୍ର ପ୍ରଣୟୀ ସମ । ଅଙ୍ଗେ କର ଦେଇ
ଜାଗ୍ରତ କଲି ମୁଁ କ୍ଷିପ୍ର । ତନ୍ଦ୍ରା ଅବସାନେ
ସଭୟ ସରମ ଲାଜେ, ମୃଦୁ ଅଭିମାନେ
ଭର୍ତ୍ସନା କରିଲ ମତେ—ଛି ଛି ନିର୍ଲଜ୍ଜତା
ନ ଦେଖାଇ ଲାଜଥାନ୍ତା ତବ ଏ ଧୃଷ୍ଟତା !

——— ——— ———

# ରୂପାଲୋକ

ଦୀପାଗ ଜଳୁଛି କହିଁ ? ନିଭୃତ ତାହାରେ
ତବ ରୂପ-ଶିଖା ଜଳୁ ଘନ ଅନ୍ଧକାରେ ।
ଠିଆ ହୁଅ କକ୍ଷ କୋଳେ, ଧୀରେ ଧୀରେ ଧୀରେ
ଅଙ୍ଗ-ଆବରଣ, ଅଙ୍ଗ ତେଜ ଏ ମଧ୍ୟରେ
ଉଠୁ ଶାନ୍ତ ଊର୍ମି ସମ । ସ୍ଫୁଟିତ ପୃଷ୍ଠରେ
ବୃନ୍ତ-ଆବରଣ ଦେଇ ମୂର୍ଖତା କେ କରେ
ଦେଖିଅଛ କାହିଁ ସଖି ? ହୁଅ ଦିଗମ୍ବରୀ
ମେଘ-ମୁକ୍ତ ଉଷା ସମ । ହୀତ-ବାସ ପଙ୍କ
ଧବଳସ୍ୱ ଲଭୁ ରୂପ-ଆଲୋକେ ତୁମର,
ଅନ୍ଧକାର, ସତ୍ୟ କରୁ ଦେବାକୁ ଅମ୍ବର
ତୁମର ନଗ୍ନିକ ଅଙ୍ଗେ । ଲଜ୍ଜା ଯେବେ ଆସି
ସହସା କହିବ କର୍ଣ୍ଣେ—'ହାୟ, ମନ୍ଦଭାଗ୍ନି,
ଏ କି କଲ !'—ଆସ ପାଶେ ଭୂଷିତ ଚରଣେ
ଆଶ୍ରୟ ତାହାରେ ଦେବ ସ୍ନେହ-ଆବରଣେ ।

———

# ହେମନ୍ତ-ପ୍ରଭାତ

ହେମନ୍ତ ପ୍ରଭାତ କାଳ; ନବୋଦିତ ରବି
ସୃଜଅଛି ସ୍ୱର୍ଣ୍ଣକରେ ଅନୁପମ ଛବି
ଶ୍ୟାମଳ ପ୍ରକୃତି ଅଙ୍ଗେ । ବନସ୍ପତି ଶିରେ
ସ୍ୱର୍ଣ୍ଣ ଆବରଣ ସମ ପଡ଼ିଛି ରୁଚିରେ
କୋମଳ କନକ ରଶ୍ମି । ନମ୍ରେ ଧରାତଳେ
ଅଫୁଟ ଶିଶିରବିନ୍ଦୁ ମୁକ୍ତାସମ ଥରେ
ଶ୍ୟାମ ଘାସ ପତ୍ରେ ପତ୍ରେ; ରଶ୍ମି ଉଦକର
ପଡ଼ି ଭାଙ୍ଗି ଏକେ ଏକେ ସୃଜୁଛି ସୁନ୍ଦର
ଇନ୍ଦ୍ରଧନୁ ବର୍ଣ୍ଣ-ଘଟା । ପ୍ରଶାନ୍ତ ଗଗନ,
ଶାନ୍ତ ସୁଶୀତଳ ବାୟୁ; ଅଦୂର କାନନ
ଝଂକାରିତ ହୁଏ ଖାଲି କରୁଣ ବେଦନେ
ବିରହିଣୀ କପୋତୀର । ଏକାଳେ ସଦନେ
ପ୍ରବେଶିଲା ସଦ୍ୟସ୍ନାତା ପ୍ରେୟସୀ ମୋହର
ଭାବିଲି ସେ ଏକ ଅଂଶ ସ୍ୱର୍ଣ୍ଣ ହେମନ୍ତର ।

———

# ପ୍ରକୃତିର ବୈଚିତ୍ର୍ୟ

ପୂର୍ବଦିନୁ ହୋଇଥିଲା ପ୍ରଣୟ କଳହ
ପୋଡ଼ୁଥାଏ ହୃଦ-ସାରା ନିର୍ମମ ବିରହ;
ସେ ଦିନ ଆସିଲା ବର୍ଷା । ମଧୁର ଝଂକାର
ସୃଜି ଅନନ୍ତରେ ଘୃଷ୍ଟ ପ୍ରାବୃଟ ଆସାର
ପଡ଼ିଲା ରଜତ ଧାରେ । ନୁହେ-ଦିନ ସଞ୍ଜ,
ଛାୟାମୟ ଏପ୍ରକାର କାଳ ରାତି, ଘୃଷ୍ଟି
ଜନ୍ମନା କରିଲ ବର୍ଷା । ପ୍ରତି ମୁହୂର୍ତ୍ତରେ
ଅନୁତାପ କଲି କଣାଁ ପ୍ରିୟା ସଙ୍ଗତରେ
କଳହ କରିଲି ମୁହିଁ । ଏକାଳେ ପ୍ରେୟସୀ
ମୁଖ ନୋଇଁ, ସରମରେ ହସି-କି-ନ-ହସି,
ଆସିଲେ ମନ୍ଦିରେ ମମ, ବସିଲେ ସଧୀରେ ।
କହିଲି ମୁଁ ହସି ତହୁଁ—'ବରଷା କୁଟୀରେ
ଶ୍ରୀପଦ ପଡ଼ିଲା କଣାଁ ?' ପ୍ରିୟା ତହୁଁ କହେ
'ବରଷା ଭାଙ୍ଗିଲା ମୋର ଗର୍ବ ଏ କଳହେ ।'

———

# ବିଜୟିନୀ

କାହାର ହୃଦୟରକ୍ତ ଅଲକ୍ତକ କରି
ଚରଣ ରଞ୍ଜିଛ ସଖି ? ବାନ୍ଧିଛ କବରୀ
କାର ସ୍ପର୍ଦ୍ଧ ମନୋରଥେ ? ଗର୍ବିତ ଝଙ୍କାରେ
କାର ଚିର ପରାଜୟ, କଙ୍କଣ ପ୍ରସ୍ଥରେ
ନିଖିଳ ଜଗତ ଭରି ? ଜଳଜ ବନ୍ଧୁର
କାହାରେ ଅବଜ୍ଞା କରି ଚିର ଊର୍ଦ୍ଧ୍ୱ-ଚୂଳ
ଅନୁପମ ଅହଙ୍କାରେ ? କର୍ଣ୍ଣ-ପୁଷ୍ପଦ୍ୱୟ
କନକ-ଜ୍ୱଳନେ ଘୋଷେ ମଙ୍ଗଳ-ବିଜୟ
କେଉଁ ଧୃଷ୍ଟ ଆସ୍ପର୍ଦ୍ଧାର ? ମଞ୍ଜୁଳ କବରୀ
କେଉଁ ଜୟ-ଘୋଷଣାରେ ଦେଇଅଛି ଭରି
ଚମ୍ପକ ମଞ୍ଜରୀମାନେ ? ଅୟି ବିଜୟିନି !
କିଏ ସେ ନିରୀହ ଶତ୍ରୁ ?
ମୁହିଁ ? ଏ କିଙ୍କିଣୀ
ମୋହର ବିଜୟେ ବାଜେ ? ତେବେ ପରାଜୟ
କରିନେଲି, ତୋ ଗୌରବ ହେଉ ବିଶ୍ୱ-ମୟ ।

———

# ସାଧନା

ମୋ ଶୋଣିତ-ବିନ୍ଦୁ ଦେଇ ତବ ଅଶ୍ରୁ-ବିନ୍ଦୁ
ପୋଛିବ ବାସନା ମମ । ପାରି-ହୀନ ସିନ୍ଧୁ
ପାରିହେବ ତବ କଣ୍ଠେ ମୁକ୍ତା ଦେବା ଲାଗି
ବିନତ ଅଞ୍ଜଳିପୁଟେ; ମୁଗ୍‌ଧ ଅନୁରାଗୀ;
କରିବ ଚରଣପ୍ରାନ୍ତେ ପ୍ରେମ-ଆରାଧନା
ସ୍ମୃତିର ନୈବେଦ୍ୟ ଦେଇ । ଯେତେକ ବାସନା
ହୋଇବ ଜାଗ୍ରତ ତବ କ୍ଷୁଦ୍ର ବକ୍ଷତଳେ
ସେସବୁର ସଫଳତା ତବ ପଦ ପରେ
ନିବେଦିବ ଆଣି ସଖି, ପ୍ରାଣ-ପାତ କରି
ତୁମର ଆନନ୍ଦ ଲାଗି । ପଦ ତବ ଧରି
ମୋ ଶୋଣିତ-ଅଲକ୍ତକ ଅଙ୍ଗୁଳିରେ ମମ
ଆଙ୍କିବ ନିବିଷ୍ଟ ମନେ । ହେ ପ୍ରିୟ ନିର୍ମମ
ତାପରେ ବିନତ ନେତ୍ରେ କରିବ ଜିଜ୍ଞାସା
'କହ ଦେବ, ପୂରାଇବ ଆଜ କିବା ଆଶା ?'

———

# ବିରହ

ବହୁ ଦେଶ, ବହୁ ବନ, ଗିରି ନଦୀ ପାରେ
ବହୁ ଦୂରେ ଏକ ଗ୍ରାମେ ଛାଡ଼ି ମୁଁ ପ୍ରିୟାରେ
ବିଦେଶେ ବିଚ୍ଛେଦଦୁଃଖ ଭୋଗୁଛି, ହୃଦୟେ
ଜ୍ୱଳନ୍ତ ଅଙ୍ଗାର ଜାଳ । ମନ ନାହିଁ ରହେ
ଏ ସ୍ଥାନେ ଏ କର୍ମ୍ମ ମେଳେ, ଧାଏଁ ଅବିରତ
ପୁଣି ସେହି ଶ୍ରେଷ୍ଠ ଗ୍ରାମେ, ପ୍ରିୟାର ବିଗ୍ରହ
ଧରି ଯେ ରଖିଛି ଏକ ଦରିଦ୍ର କୁଟୀରେ
ସିକ୍ତ ଯାର ରେଣୁରାଶି ପ୍ରିୟା-ନେତ୍ରନୀରେ ।
ବ୍ୟବଧାନ ଦୁଇ ପ୍ରାନ୍ତେ ଯୁଗଳ ପ୍ରଣୟୀ—
ଦୁଇ ହୃଦୁ ବାର୍ତ୍ତା ଯାଏ ଅଗୋଚରେ ରହି
କରି ବ୍ୟବଧାନ ଜୟ; ତେଣୁ ଦୁହିଙ୍କର
ନେତ୍ରୁ ପଡ଼େ ଅବାରିତ ଅଶ୍ରୁ ନିରନ୍ତର ।
ଦୁଇ ଦେଶେ ଦୁଇ ଦୁଃଖୀ—ପ୍ରେମ ଥାଇ କହେ
'ଚିନ୍ତା ନାହିଁ—ପ୍ରାଣ ଲଭେ ପ୍ରସାର ବିରହେ ।'

———

## ଦେହ ଓ ସ୍ନେହ

ପାଇଲି ମୁଁ ସ୍ନେହ-ରତ୍ନ ଦେହେ ଅବଗାହି
ମୁକ୍ତା ପାଇ ଫେରିଛି ମୁଁ ଗୁଞ୍ଜା ଖୋଜି ଯାଇ
ପ୍ରିୟାର ସରସ ସ୍ନେହ ଦେହ-ଅବସାନ
କରିଅଛି ଶେଷେ ମୋର । ଆତ୍ମା, ପଞ୍ଚବାଣ
ଲଭିଛି ବନ୍ଧନ ବେଳ, ଇନ୍ଦ୍ରିୟର ଶେଷେ
ଅତୀନ୍ଦ୍ରିୟ ସୁଖ ଲଭି ଆଜି ଅବଶେଷେ
ହୋଇଛି ମୁଁ ଜିତେନ୍ଦ୍ରିୟ । ଆଜି ଯେବେ ପ୍ରିୟା
ପାଶେ ଆସି ଯୁକ୍ତ କରେ ହୃଦୟ ସଙ୍ଗେ ହୃଦୟ
ଭୁଲେ ମୁଁ ଶରୀର ସ୍ପର୍ଶ, ଅନୁଭବେ ଖାଲି
ତା ଦେହ-ମନ୍ଦିର ମଧ୍ୟେ, ପ୍ରିୟ ମୋର ଜାଳି
ରଖିଛି ଯେ ପ୍ରେମ-ଶିଖା; ଉଷ୍ଣତା ତାହାର
ତା ଜଡ଼-ଶରୀର ଭେଦି ମୋ ଦେହେ ସଞ୍ଚାର
କରୁଛି ଜୀବନ-ରସ । ପ୍ରଣୟ ଆମର
ରୂପ-ପର ଥିଲା ଯେବେ ଆଜି ରୂପୋତ୍ତର ।

---

## ବିରାଟ ସ୍ରଷ୍ଟା

କ୍ଷଣେ କ୍ଷଣେ ତାରକିତ ଗଗନରେ ଲକ୍ଷି
ଦେଖେ ମୁଁ ସୃଷ୍ଟିର ଲୀଳା—ମହାବ୍ୟୋମେ ଥାଇ
ଅଗଣ୍ୟ ସଂସାର ଭ୍ରମୁଛନ୍ତି ଅବିରତ
କାର ମହାଇଙ୍ଗିତରେ ? ଦୃଷ୍ଟି-ପରିହତ
ମହାବ୍ୟୋମେ ଝଞ୍ଜାନିଳ କେ ଉଦଗ୍‌ଧ ସୁନାଉ
ଶ୍ୱାସ-ଚୂର୍ଣ୍ଣ ସମ ଏ ଯେ ସୃଷ୍ଟି ସାରି ସାରି
ଜୀବନ୍ତ ନିୟମେ ବାନ୍ଧି ? ସୂର୍ଯ୍ୟ ଲକ୍ଷ ଶତ
କୁଟୁମ୍ବ ତାଙ୍କର ଧରି ପିପୀଲିକା ବତ
ଚଳିଛନ୍ତି ବ୍ୟୋମମାର୍ଗେ ଯୁଗଯୁଗାନ୍ତରୁ
ଅଜ୍ଞେୟ ଅଜ୍ଞାତ ରାଜ୍ୟେ । କାହା ଇଙ୍ଗିତରୁ
ଏ ସୃଷ୍ଟି ପାଳନ ଗତି ? ବିରାଟ ବ୍ୟାପାର
କିଏ ସେ ସୃଜନ ଅବା ? ଉତ୍ତରେ ଏହାର
ସନ୍ଧାନ ମିଳଇ ଏକ ବିରାଟ ସ୍ରଷ୍ଟାର
ସ୍ତବ୍‌ଧ ଚିତ୍ତବୃତ୍ତି କରେ ମହିମା ଯାହାର ।

———

## ମୁକ୍ତି ନାହିଁ ମାଗେ

ସ୍ୱର୍ଗ, ମୁକ୍ତି ନାହିଁ ବାଞ୍ଛେ, ଜୀବନ ମୁଁ ଯାଚେଁ
ସୁଖ-ଦୁଃଖମୟ ଏହି ଜୀବନ-ପ୍ରବାହେ
ଏ ବିଚିତ୍ର ଧରଣୀର । ମୋର ଜନ୍ମାନ୍ତର
ଜଗତର କୋଟି କୋଟି ଦୁଃଖୀ-ଦରିଦ୍ରର
ନୟନ-ଲୋତକେ ମୋର ଲୋତକ ମିଶାଇ
ହେଉ ଗୋ ପବିତ୍ରତର । କବିତାରେ ଗାଇ
ଦଳିତ, ଲାଞ୍ଛିତ ଯେତେ, ତାଙ୍କ ଦୁଃଖ-ବ୍ୟଥା
ଅବଜ୍ଞାତ, ସୁଖ-ଦୁଃଖମୟ ପ୍ରାଣ କଥା,
ଲେଖନୀ ମୋ ଧନ୍ୟ ହେଉ । ଏ ମୋର ଶରୀର
ଅନନ୍ତ କରୁଣାଭରେ ପୋଛୁ ନେତ୍ର ନୀର
ଲକ୍ଷ ଲକ୍ଷ ଦରିଦ୍ରର, କ୍ଷୀଣ ପଳେ ପଳେ
ହେଲେ ସେ ପରମ ଭାଗ୍ୟ, ମୋର ଜନ୍ମାନ୍ତରେ ।
ଜୀବନେ ଜୀବନେ ଜନ୍ମି ଭକ୍ତ ମୋର ହେଇ
ମେଣ୍ଟିବ ମାନବ-ଦୁଃଖ, ଦୁଃଖ ଅଙ୍ଗେ ନେଇ ।

———

# ଆତ୍ମାର ସୌନ୍ଦର୍ଯ୍ୟ

ପଚାରିଛ କେତେ ବାର 'ମତେ ନା ରୂପରେ
କାହାରେ ପ୍ରଣୟୀ ହଅ ?' କହିଲେ ସତ୍ୟରେ
ଉଭୟଙ୍କୁ ପ୍ରିୟ ସିନା । ରକ୍ତ-ମାଂସ-ଦେହ,
ଏ ଦୁଷ୍ଟ ଇନ୍ଦ୍ରିୟ-ଗ୍ରାମ, ଘୃଣା-ଦ୍ୱେଷ-ସ୍ନେହ,—
କେମନ୍ତେ କହିବ,—ଏ ସମସ୍ତ ସାଥେ ଧରି
ରୂପାଶ୍ରିତ ସ୍ନେହ ମମ, ଜିତେନ୍ଦ୍ରିୟ ପରି ?
ରୂପ ବା କି ଘୃଣ୍ୟ କଥା । ନର ସୌନ୍ଦର୍ଯ୍ୟରେ
ଭକ୍ତ ସମ ଅଛି ରହିଁ, ବିମୁଗ୍ଧ ଧୈର୍ଯ୍ୟରେ
କେତେ ବାର ସଖି ମୁହିଁ, ବିଦଗ୍ଧ ସ୍ରଷ୍ଟାର
ସୃଷ୍ଟିର ମହିମା ସିନା । କିନ୍ତୁ ଗୋ ଆତ୍ମାର
ସୌନ୍ଦର୍ଯ୍ୟ ତହିଁରୁ ବଳି, ଯାର ସମ୍ମୁଖରେ
ମନୁଷ୍ୟ ନୁଆଁ ଏ ମଥା । ତବ ରୂପ ତଳେ
ସେ ରୂପର ସନ୍ଧାନ ମୁଁ ପାଇଛି ସୁନ୍ଦରି,
ମୋ ପ୍ରେମ ହରଷ ଦେହ-ଅନ୍ତର ସଞ୍ଚରି ।

———

# ଅପରାଧ

କହିବାକୁ ପଚାରିଛ ତୁମ୍ଭେ କେତେ ବାର
ଜୀବନେ କରିଛି କିବା ପାପ ବ୍ୟଭିଚାର
ଭାବିଛି ଅନେକ ଥର, ସରମ ଫୋପାଡ଼ି
ତବ ଆଗେ ଦିଅନ୍ତି ମୋ ଅପରାଧ ବାଢ଼ି
ତପ୍ତ ଗୁପ୍ତ ଅନ୍ତରର । କିନ୍ତୁ କିସ ଲାଭ ?
ଅପରାଧ ଜାଣିଲେ କି ବଢ଼ିବ ସଦ୍ଭାବ.
ଘନତର ହେବ ପ୍ରୀତି ? ନଖେ ନଖେ ଚିରି
ଅଧିକ କି ଅନୁଭବ ହୁଏ ପୁଷ୍ପ-ଶିଶୁ ?
ମୋ ଆତ୍ମାର ପୁଣ୍ୟଗନ୍ଧ ଦେବି ମୁଁ ତୁମରେ
ସରଳ ନିର୍ମଳ ପ୍ରେମ ଢାଳିଦେବି କରେ,
ଜୀବନମୟୂ ଦିଅ ମତେ । ପାପ-ଅପରାଧ
ପ୍ରେମ-ସିନ୍ଧୁ ତଳେ ପଡ଼ୁ । ରଖି ସେ ସଂବାଦ
କି ଲାଭ ତୁମ୍ଭର ହେବ ? କର୍ତ୍ତବ୍ୟ ତୁମର
ପ୍ରେମଜଳେ ଧୋଇ ମତେ ପବିତ୍ରିତ କର ।

———

# ଜୀବନପଥ

ଆଣ ତବ କର ସଖି, ଧରେ ମୁଁ ନବଢଙ୍ଗେ
ଚଳିବା ସରଣୀ ଖୋଜି, ଏ ସଂସାର ଢଙ୍ଗେ,
ଜୀବନ-ସଂଗ୍ରାମ କାଟି । ମିଥ୍ୟା, ବ୍ୟଭିଚାର,
ଦାରିଦ୍ର୍ୟ, ଲାଞ୍ଛନା, ଦୁଃଖ, ଦୈନ୍ୟ, ଅବସ୍ଥର
ସମସ୍ତ ଜିଣିବା, ଆତ୍ମା ଆତ୍ମାରେ ମିଶାଇ
ଦୁର୍ଦ୍ଦିନ କାଟିବା ପରସ୍ପର ମୁଖ ଚାହିଁ ।
ଯୁଗଳର ପ୍ରେମ ହେଲେ ବର୍ମ ଯୁଗଳର
ନ ଛୁଇଁବ ଦୁହିଙ୍କୁ ଏ ଦୁଃଖ ଜଗତର ।
ଦୁହିଙ୍କର ପଦ-କ୍ଷତ ଦୁହିଙ୍କ ଲୋତକେ
ପୋଛିବା ସଦା ଗୋ, ବ୍ୟଥା ଛୁଟିବ କ୍ଷଣକେ
ପ୍ରେମହୀନ ଏ ସଂସାରେ ଢାଳିବ ପ୍ରଣୟ
ଆଘାତକୁ ଆଶୀର୍ବାଦ ଦେଇ ଜନମୟ
ବଞ୍ଚିବା ଜୀବନ ସଦା, ଆମ ଯିବା ପଥେ
ଈଶ୍ୱର ଫୁଟିବେ ପୁଷ୍ପ ସମ ପଛେ ପଛେ ।

———

## ଜୟେ-ପରାଜୟେ

ଗୁଣବନ୍ତ ହେ କିଶୋର, ମାନ-ଅଭିମାନ
ଦେନା-ଦେନ, ତ୍ୟାଗ-ଭୋଗ, ଦ୍ୱନ୍ଦ୍ୱ-ସମାଧାନ
ଏସବୁର ମଧ୍ୟେ ଆମ ପ୍ରେମ-ଶତଦଳ
ଫୁଟିଉଠୁ ପଦ୍ମ ଯଥା ଫୁଟେ ଭେଦି ଜଳ ।
ସଂସାର-ସଂଗ୍ରାମେ ଯୁଝି ଜୟ-ମାଲ୍ୟ ଧରି
କୁଟୀରେ ଫେରିବ ଯେବେ ତୁମେ ସହଚରି,
ସ୍ୱର୍ଣ୍ଣ-ଭୁଜମାଳା ମୋର କଣ୍ଠେ ଦେଇ ଭିଡ଼ି
ଚୁମ୍ବନ-ତିଳକ ସ୍ୱିନ୍ନ-କପାଳେ ନିବିଡ଼ି
ସାର୍ଥକ କରିବ ମୋ ଜନ୍ମ । ଫେରିବ ଯେ ଦିନ
ଭଗ୍ନଜାନୁ, ଅବସନ୍ନ, ପରାଜୟ-ଦୀନ
ସେ ଦିନ ଜନନୀ ସମ ତୋଳି ମତେ ତଳୁ
କଲ୍ୟାଣ କୋମଳ ହସ୍ତେ ନିଖିଳ ଅଙ୍ଗରୁ
ପୋଛି ନେଇ ସବୁ ଦୈନ୍ୟ, ସବୁ ଅପମାନ
ଦେବ ମତେ ତବ ପ୍ରେମ—ମୋ ଶ୍ରେଷ୍ଠ ସମ୍ମାନ ।

———

# ନିଶୀଥ-ଆଳାପ

ନୀରବ ନିସ୍ତେଜ ଗ୍ରାମ; ନିଦାଘ ରଜନୀ
ସ୍ୱେଦ-ସିକ୍ତ କରେ ଶଯ୍ୟା, ଆଜି ଗୋ ସଜନି,
ଶୟନେ ବିଦାୟ ଦିଅ । ବସ ମୋ ପାଶରେ
ଆଣ ସେଠୁ ତାଳବୃନ୍ତ ବ୍ୟଜନ ମୁଁ ଧରେ
ପୁଞ୍ଛିଦେବି ଦେହୁ ସ୍ୱେଦ; ତାପରେ ନୀରବ
ଏ ନିଶୀଥ, ଗୁଞ୍ଜରିତ କରି, ଅନୁଭବ—
ଦୁହିଙ୍କର, ପରସ୍ପରେ ହେବା କୁହାକୁହି,
ଅମ୍ଳ-ମଧୁ ପରିହାସ ହେବା ସୁହାସୁହି ।
ଶେଷେ ନିଶାଶେଷେ ଯେବେ ସୈନ୍ଧବ ପବନ
ଶୀତ ସ୍ପର୍ଶେ ତନ୍ଦ୍ରାଭିଡ଼ କରିବ ନୟନ
ସଧୀରେ ଶୁଆଇ ଦେବି, ଦରିଦ୍ର ଶୟନେ
ଉପାଧାନେ ଥୋଇ ମଥା । ଭୟ ଅକାରଣେ
କର ନାହିଁ ସଖି ମତେ । ଅଙ୍ଗ ଆବରଣ ।
ଆବୃତ ରଖି ଗୋ ଥିବ ଉରୁରୁ ଚରଣ ।

———

# ବିରହୀ-ଗାଥା

୧

ବିରହ ବିଧୁରେ ମନ-ମନ୍ଦିରେ
ତୁମରି ଚରଣ-ପାତଶବ୍ଦଁ ଶୁଣେ,
ଚିତ୍ତ ନାଚିଲ ବିରହ-ଅଥିର
ଭବିଷ ମିଳନ-ମାଧୁରୀ ଗୁଣେ ।

ଧାଏଁ ମନୋରଥ ସଖି ଅବିରତ
ଭ୍ରମଇ, କକ୍ଷ-ଗବାକ୍ଷରେ,
ଦେଖିବାକୁ, ତୁମେ ପ୍ରିୟଲାଗି ଭ୍ରମେ
ଅଛ ଯେ ଶାପିତା ବିଚ୍ଛେଦରେ ।

ଦୂତ ମନୋରଥ ଇଚ୍ଛେ ପଣତ
ଖୋଲି, ଖୋଲି ନେବ କାନ୍ତ ତନୁ,
ଅଶ୍ରୁ ପୋଛିବ ଜଟାର ଶିବ,
ଆଣିବ ସାଉଁଳି ସେ ଭୁଲୁ ଧନୁ ।

ତନୁ ତନୁଲତା ହୃଦୟେ ଶାପିତା
କିଏ ଜାଣେ ଦେବ ସାନ୍ତ୍ୱନା
ମୁଖ ଆଘ୍ରାଣି, ଧରି ଧୀରେ ପାଣି
କହିବ 'ଅଶ୍ରୁ ମୁଞ୍ଚ ନା' ।
କି କରୁଛ ଅୟି, ଅନ୍ତର ଦହି
ତୀକ୍ଷ୍ଣ କଠୋର ବିରହ-ବାଣେ,
ଭ୍ରମରି ତଳି ବିଛ ବ୍ୟଥିତ
ମୋର ଏ ପ୍ରାଣର ବ୍ୟଥା କି ଜାଣେ ?

୨

ଭୁବନ ପାନ୍ଥଶାଳାରେ ଯେତେକ
ରୁଣ୍ଡ ପାନ୍ଥ ଯାହା ପାଇଁ
ମୋ ପରି ଦୁଃସ୍ଥ, ଅକିଞ୍ଚନ, ବା
ମୂଲ୍ୟବିହୀନ କେହି ତ ନାହିଁ ।

ନୟନ ଆଗେ ଯେ ଭାଗ୍ୟବନ୍ତ
ଯାଆନ୍ତି ସକଳ ଯାତ୍ରୀ ପଥେ
ମିଶିବି କିପରି ସାଥିରେ ତାଙ୍କ,
ନିଜର ଦୈନ୍ୟ ଖାଏ ଯେ ମତେ ।

ସରମଭରେ ମୁଁ ତେଣୁ ଏ ଭୁବନେ
ନ ପାରେ କାହାଠି ତଣ୍ଡି ଖୋଲି
ମରମେ ମୋର ଯେ ପ୍ରଣୟ ତୋହର
କାହାକୁ ଏ କଥା ଲାଜରେ ବୋଲି ?

ଯାଏଁସୁ ବା ଆଜ କ ଅଛୁ ଗୋ କହ,
ତଥାପି ମୋର ଏ ଜୀବନ ପଥେ
ତୋହର ପ୍ରଣୟ ପରମ ସିନା ଗୋ
ଜଗତେ ମଣ୍ଟଷ କରିଛୁ ମତେ ।
ସଘଣ ଭବର ଅନ୍ଧକାରରେ
ମାଣିକ ସମାନ ଜଳଇ ତାହା
ଦୂଇଦିନ ଘୋର ତାମସ ପଥରେ
ଦେଖାଇ ଦେବ ସେ ମତେ ଗୋ ସ୍ପହା ।

୩

ଅନେକ ବେଳେ ଗୋ ଭ୍ରଲଇ ସଜନ,
ଏଇ ଜନମରେ ହେଲ୍ଲ କ ଦେଖା
ଏକ ଜନମର ଚିହ୍ନା-ଚିହ୍ନି
କାଟିଲ୍ଲ କ ଏଡ଼େ ଗଖିର ଲେଖା ?
ଅପରିଚିତ କ ଥିଲେ ଆଗୋ ଆମେ,
ଏଇ ଜନମର ପୂର୍ବ ପାରେ
କୁନ୍ତଳ ତବ ସଜାଉଥିଲି କ
ଆରେକ କାହାର ପୁଷ୍ପମାଳେ ?
ଜୋଛନା ରାତିରେ ଜଡ଼ିତ ଚରଣେ
ଆଜ କେ ତମର ଶୟନଧାରେ
ପରିଶୁଥିଲ୍ଲ କ ତୋଳ ଧରିବାକୁ
ହଲଇ କୋମଳେ ବକ୍ଷହାରେ ?
ଚରଣତଟରେ ଲଗାଉଥିଲ୍ଲ କ
ଅଲକ୍ତ ଆନ ଅଙ୍ଗୁଳି
ଆଜ କାର ଓଠ ଶୁଣାଉଥିଲ୍ଲ କ
ଶ୍ରବଣକୁହରେ ଗୁଞ୍ଜରି ?

ନାହିଁ ନାହିଁ ! ମିଛ ! ବକ୍ଷେ ଜାଳଇ
ବହ୍ନି ସେସବୁ କଳ୍ପନା
ତୁମେଇ ମୋହର ସଖୀ ସନାତନୀ
ଜନମେ ଜନମେ ସାନ୍ତ୍ୱନା ।

୪

ଅଗଣିତ ରବି ଚନ୍ଦ୍ର ତାରକା
ନକ୍ଷତ୍ରର ସୃଷ୍ଟି ଲୟେ
ତୁମେ ଆଉ ମୁହିଁ ରହିଥିଲେ କାହିଁ
ଜନମେ ଜନମେ ନତ୍ୟ କ୍ଷୟେ ?
ସୃଜନ ଲୀଳସେ ଥିଲେ କି ଗୋ ଆମେ
ସୃଜନ-ବିଳାସୀ ବିଷ୍ଣୁର
ମୀହାରିକା କୋଟି ବିନ୍ଦୁର ମେଳେ
ଯୋଡ଼ିଏ, ପ୍ରଣୟୁ ସଙ୍କୁଳ ?
ତାପରେ ସକଳ ସୃଜନ ଧାରାରେ
ଥିଲେ କି ଦୁଇଟି ବିନ୍ଦୁ ହୋଇ
ସକଳ ରୂପର ଭୁଞ୍ଜି ମରମ,
ସକଳ ଜନମେ ଯୁଗ୍ମ ରହି ।
ଅଯୁତ ଅଯୁତ ଜନମ ବିତାଇ
ପୁଣି ଗୋ ପୁରୁଣା ଧରଣୀତଳେ
ଜନମ କି ଆମେ ଯୁଗଳ ପରାଣ
ମାନବଶରୀରେ ମାନବଘରେ ?
ଅଭିଯାନ ଏହି ଯୁଗ୍ମ ପ୍ରାଣୀର
ବିପୁଳ କାଳର କକ୍ଷେ କକ୍ଷେ,
କହିଲ କି ପାରିବ ସଙ୍ଗିନ ଆଗୋ,
କେଉଁ ସେ ନିଗୂଢ଼ ଗୁପ୍ତ ଲକ୍ଷ୍ୟେ ?

୫

ନପୂରିତ ନପୂରିତ ଜନମ ଶେଷରେ
ଆଜ୍ଞ ଥରେ ପୁଣି ମାନବ-ଦେହେ
ମାହାରିକା ଘନ ଯୁଗ୍ମ ବନ୍ଧୁ
ମିଳନ ଖୋଜଇ ନବଜ ସ୍ନେହେ ।
ତେଣୁ ମୋ ଗଭୀ ମିଳନ ଲାଳସା
ନିତ୍ୟ ଉଠଇ ବାରମ୍ବାର
ତେଣୁ ଗୋ ତୁମର କାନ୍ତ ଅଙ୍ଗେ
ବାସନା ମୋ ତନୁ ମିଶାଇବାର ।
ତେଣୁ ଆଗୋ ଆଜ ଏଇ ବକ୍ଷେଦେ
ହୃଦୟ ମୋ ଗୃହେ ବାହାରଯିବ,
ଭଗ୍ନ କରି ଏ ଶରୀର କକ୍ଷ
ଯେଉଁଠି ତାହାର ସଙ୍ଗୀ ଥିବ ।

୬

ମରଣ-କପାଟ ପଡ଼ିବ ଯେବେ ଗୋ
ଏହି ଜନମରେ ସରଣୀ-ଶେଷେ
ନୂତନ ପଥରେ ଯାତ୍ରା କ ହେବ
ପୁଣି ଗୋ ନୂତନ ଯୁଗଳ-ବେଶେ ?
ତାରରେ ତାରରେ ଯିବା କି ମିଶି ଗୋ
ବିପୁଳ ବ୍ୟୋମର ଅଙ୍ଗନରେ
ଭ୍ରମିବା ଯୁଗଳ ଜ୍ୟୋତିର୍ମନ୍ତ
ଅଗଣ ତାରକା ସଙ୍ଗତରେ ।
ଅଥବା ସଜନ, ଫେରି କା ଆସିବା
ଅନ୍ୟ ବେଶେ ଏ ଧରଣୀ ପରେ

ଅନ୍ୟ ଦେଶରେ ଅନ୍ୟ ଜାତିର
ଆଦର-ଛତ୍ର କୁଟିଉଛନ୍ତେ ?
ଅଥବା ହେବା ଗୋ ପୁଲକେ କେଉଁଠି
ପ୍ରଣୟ-ବଧୂର ଚକ୍ରବାକ
ମଧୁର-ଦୁଃଖ ଭୋଗିବା ଶୁଣି ସେ
ପରସ୍ପରର ବିରହ ଡାକ ?
ଯହିଁ ଅବା ଯାଏ ଯେଉଁଠି ଥାଏ ମୁଁ
ନିର୍ଦେଶ କଲେ ମୋ ସ୍ରଷ୍ଟାର
ତୁମେ ନିକ ମୋର ପାଶରେ ଥିବ ଗୋ
ଶୁଣାଇ ରସନା ଝଙ୍କାର ?
ମୂର୍ଖ ସବୁ ରେ ମୁକ୍ତି ମାଗଇ
ସ୍ୱର୍ଗ ମାଗଇ ତପସ୍ୱୀଏ
ସ୍ୱର୍ଗ ମୋହର ଚରନ୍ତନ ଗୋ
ତୁମେଇ ଜୀବନ ସଙ୍ଗ-ଚକ୍ଷୁ ।
ତୁମର ବାହୁର ମୃଣାଳ-ବଲ୍ଲୀ
ଛନ୍ଦା ଥିଲେ ଏ ମୋହର ଗଳେ
ଅକୁଣ୍ଠିତେ ମୁଁ ଯିବି ଆଗୋ ଯିବି
ଜହାନ୍ନାମର ଗର୍ଭର ତଳେ ।



# ବିରହ-ପ୍ରଦୀପ

କେ ଜାଳିବ ସନ୍ଧ୍ୟା ଦୀପ ଆଜ,
ଅନ୍ଧାର ଯେ ରହିଲା କୁଟୀର,
ମନ୍ଦିରର ଦେବୀ ଗଲେ କାହିଁ,
ସ୍ବରଆଡ଼ ମାରିବ ଗମ୍ଭୀର ।
ବାହାର ଭିତର ସ୍ବରଆଡ଼େ
ଅନ୍ଧକାର ବ୍ୟାପିଛି ପର୍ବଣେ
ପ୍ରଦୀପ ଆଣିଲେ ଆନ କେହି
ସେ ଆଲୋକେ ପରାଣ ନ ମାନେ ।
ଆଖି ଖୋଜେ ସେହି ପରିଚିତ
କାନ୍ତି କାନ୍ତ କମନୀୟ କରେ
ଜଳିବାର ସ୍ବର୍ଣ୍ଣଦୀପ ଶିଖା
ଝାପସାଇ କୃଷ୍ଣ ନୟନରେ ।
ସେ ଯେ ନାହିଁ ସେ ଯେ ନାହିଁ ଆଜ,
ଆଲୋକ ତ ହରାଇଛି ଜ୍ୟୋତି
ଶାମୁକା ମାଟିରେ ଅଛି ପଡ଼ି
ନେଇ ତ ଯାଇଛି କିଏ ମୋତି ।
ତେବେ କିଆଁ ବୃଥା ଏ ଆଲୋକ,
ଅନ୍ଧକାର ରହୁ ଏ କୁଟୀର,
ସ୍ମରଣର ପ୍ରଦୀପ ଜଳାଇ
ଆଲୋକିବ ଆତ୍ମା ବିରହୀର ।

———

# ଶ୍ରାବଣ ଅଭିସାର

ପ୍ରଲମ୍ବିତ ଘନ-ଘୋର ଶ୍ରାବଣ ନିଶୀଥ
ଅସର ଆସାରେ ପୁର, ପଲ୍ଲୀ, ବନ ବ୍ୟାପିଛି;
ଅଣବୁଝା ବନ୍ଦେ ଘୋର ବରଷି
ଆକାଶରେ ନାହିଁ ତାରା, କାଳିମ, ବଜ୍ର ଧାର
ଝଡ଼େ ଜୀବ ହୋଇ ଉଠେ ହତାଶୀ ।

କଳକଳ ଛଳଛଳ ବରଷାର ସଲିଳ
ବହିଯାଏ ଧାରେ ଧାରେ ଖାଇ ଧରା-ଶରୀର,
ଡାଳ ଗଛ ଦୋଳେ ଝଡ଼ ପବନେ
ବୃକ୍ଷଆଡ଼େ ସାଇଁ ସାଇଁ ଜନପ୍ରାଣୀ କେହି ନାହିଁ
ଦୁଆର ଆଉଜା ପ୍ରତି ଭବନେ ।

ବୁଢ଼ା ବାତାୟନ ଥରେ ବତାସିର ଦମକେ
ବିଜୁଳି ଝଲକେ ଜାଗରିତ ବୁଲୁ ଚମକେ,
ଯୁଝେ ଯତ ଆକାଶର ଦାନବେ
ଘଡ଼ଘଡ଼ ଚଡ଼ଚଡ଼ ଘଡ଼କେ ଘଡ଼କେ ହଡ଼
ପୂରଇ ଭୁବନ ଘୋର ଆରବେ ।

ମନ ନାହିଁ ଲାଗେ ମୋର, ଘରେ ରଜନୀରେ ଗୋ
ଜଆର ଉଠଇ ହୃଦ-ଯମୁନାର ନୀରେ ଗୋ
ଝଡ଼ରେ ଡ଼େଇଁ ଯିବ କୁଆଡ଼େ
ଦୁଆର ଖୋଲ ହେ ଖୋଲ, ଶ୍ରାବଣର ଘନ ସେଳ
ମିଶୁ ଆସି ମୋ ହୃଦୟ ଜୁଆରେ ।

ଲଗଇ ଯେପରି କଏ ଖୋଜେ ମତେ ପଛ ରେ
ପ୍ରାଣର ପୀଡ଼ାରେ କାନ୍ଦାଉଛୁ ଏଦ୍ଧ ଅକାଳେ ।
ହୃଦୟ ମୋହର ତେଣୁ ଉଥଳ
ମନ ନାହିଁ ଘରେ ଧରେ ମୁକତ ଆକାଶ ତଳେ
ବତାସିରେ ଖୋଜଇ ସେ ଦୋସର ।

ମଥାରେ ପଡ଼ୁ ରେ ଧର, ଆଖେ ବାଜୁ ତୋଫାନ
ଖସଡ଼ୁ ଚରଣ, କାନେ ପଶୁ ମେଘ-ଘଷାଣ,
ପାଗଳ ପରି ମୁଁ ତାକୁ ଖୋଜଇ,
ଖୋଜିବାକୁ ଚରାଚର ମେଲଇ ମୁଁ ଦୁଇ କର
ଶ୍ରାବଣ ବତାସି ଦେଦେ ହଜଇ ।

ପାଏ ବା ନ ପାଏ ତାକୁ ନାହିଁ ତହିଁ ଶୋଚନା
ଏ ଘୋର ନଶୀଥେ ଖାଲି ଅଭିସାର ରଚନା
କରଇ ମୁଁ ପ୍ରିୟଜନ ପାଇଁରେ,
ପ୍ରାଣେ ମମ ବ୍ୟାକୁଳତା କହିବାକୁ ପ୍ରାଣବ୍ୟଥା
ବରଷା-ବିଜୁଳି ଘୋର ଭୁଇଁରେ ।

ରାଧା ଡେଇଁ ଅଭିସାର, ଗୀତିଭରି ବିଳାସ
ପାଇବାଠୁଁ ଖୋଜିବାରେ ପ୍ରଣୟର ପ୍ରକାଶ,
ତେଣୁ ଏ ବଢାସି-ଘୋର ନଶୀଥେ,
ଘର ଛାଡ଼ି ପଥେ ବନେ ଖୋଜିବାକୁ ପ୍ରିୟଜନେ
ହୃଦୟ ପୂରଇ ଘୋର ବ୍ୟଥିତେ ।

ଜୀବନେ ଜୀବନେ ମମ ନାହିଁ ଆନ ଯାଚନା
ଧନେ, ମାନେ ନୋହୁ ମୋର ସୁଖମାତ୍ର ରଚନା
ପ୍ରାଣ ଚାହେଁ ଏହିପରି ବଢାସେ
ବରଷା ବିଜୁଳି ସଙ୍ଗ, ଯିବ ନଶାପଥ ଧାଇଁ
କରି ମେଳ ପ୍ରିୟଜନ ସକାଶେ ।

ଲାଖ ଛାଡ଼ି ତୁମେ ସଖି, ଯାଆ ଚାଲି କାହାରେ
ଫୋଡ଼ି ଦିଅ ଯାଇ ଘୋର ବରଷର ବାହାରେ,
ଆନ ଆନେ ଏ ନଶୀଥେ ଖୋଜିବା
ଲୁହ ମିଶି ବରଷାରେ, ଅବମିତ ଭିରୁଷାରେ
ଅଭିସାର-ସୁଖେ ଆଜ ମଜିବା !

ଜୀବନେ ଜୀବନେ ସଖି, ଏସନ ରଜନୀରେ
ଆସିବୁ ତୁ ଧୋଇ ମେଘମାରେ ଚୋର ବେଣୀରେ,
ଅସାରେ ଉଡାଇ ଦେହ ବସନ,
ହୃଦୟ-ଯମୁନାକୂଳେ ଧାଇଁଥିବ ମୁଁ ବ୍ୟାକୁଳେ
ସଫଳିବ ଦିହିଙ୍କର ସପନ ।

ଦୁଇ ଟୋପା ଲୁହ ସମ ଜନମ ଜନମରେ
ଝରନ୍ତ-ବ୍ୟଥିତ ହୋଇ ପ୍ରଣୟ-ସରମରେ
ବାହାରିବା ଏକ୍ଷପର ତୋଫାନେ,
ଯୁଗ ଯୁଗ ଯିବ ସରି, ଖାଲି ଅଭିସାର କରି
ଜୀବନ-ଜୀବନ—ପ୍ରାନ୍ତ ସୋପାନେ ।



## ମିଳନ-ମାଧୁରୀ

କିଶୋରି ଗୋ ତବ ବକ୍ଷ-କମଳ
ମୋ ହୃଦ-କମଳ ପରେ
ରଖିଲ ଯା—ଟିକେ ରହ ଥିର ହୋଇ,
ଅନୁଭବ ତାହା କରେଁ ।
ପୁଲକିତ ଦେହ, ପୁଲକିତ ମନ
ଆଲୋକିତ ଅନ୍ତର,
କ୍ଷୁବ୍ଧ-ଶୋଣିତ, ଅଙ୍ଗେ ଅଙ୍ଗେ
ଆନନ୍ଦେ ଥର ଥର ।
କ୍ଷୁଦ୍ର ଜୀବନ ମହା ଜୀବନରେ
ଧୀରେ ଧୀରେ ଧୀରେ ମିଶେ
ଭାସିଯାଏ ଆମ ମିଳନ-ମାଧୁରୀ
ସୃଷ୍ଟିର କଣ କଣେ ।
ଧରା ଜୀବନର ଜଡ଼ ଅନୁଭବ
ଦେହ ମନୁଁ ଧୀରେ ଛୁଟେ
ହୃଦୟ-ଦଳରୁ ସୌରଭ ସମ
ମହାନନ୍ଦ-ସ୍ତବ ଫୁଟେ !

"ଜୟ ଈଶ୍ୱର, ପତିତ-ପାବନ,
ଲକ୍ଷ୍ମି ଗୋ, ଜୟ ନାରୀ,

ମଙ୍ଗଳ କର, ଜାଗ୍ରତ କର
କଲ୍ୟାଣ ତବ ଢାଳି ।

ତୋହର ପ୍ରଣୟ-ଊଷାର ପରଶେ
ମୋର ମନ-ଶତଦଳ
ବିକଶିତ ହେଉ ବସନ୍ତ ସମ
ସୌରଭେ ଟଳମଳ ।

ତୋହର ପାବନ ପୁଣ୍ୟ-ଶିଖାରେ
ନିର୍ମଳ କର ମତେ
ଧରି ହାତ ମୋର, ଘେନିଯାଅ ସଙ୍ଗି
ଚିର ତୋ ଯେଉଁ ପଥେ ।"



# ନିତ୍ୟ ସ୍ୱୟମ୍ବର

ପ୍ରଥମ ବରମାଳା ଦେଲି ଯା ଗଳେ
ଶେଷ ମୁଁ ଭାବିଥିଲି ତାହାରେ
ପ୍ରଥମ ଲଯୁଷ୍ପ ଦେଲି ଯା କରେ
ପ୍ରଥମ ଚରଣ ମୋ ହୃଦ୍ୱାରେ ।

ସଖି ଗୋ ଭାବିଥିଲି ଶେଷ ବୋଲି ତା
ପ୍ରଥମ ସ୍ୱାଦ ନାହିଁ ପାଇବ
ପ୍ରୟୂଣ, ଶୁଣିଥିଲି ପ୍ରଥମ-ମିଠା,
ଶେଷେ ଢସଗେ ଅବଗାହିବ ।

ଭେଟିଲେ ନରଜନେ ଦୁଏ ନ ଆଉ
ନୟନ ଲୋଳ, ମୁଖ ସ-ହସ
ଦୁଏନ ଚକ୍ଷୁ-ବିନ୍ଦାଁ ପାଖରୁ ଯାଉଁ,
ବଢ଼ିଲେ ପର ପ୍ରୀତି-ବୟସ ?

ପ୍ରଣୟ ତୁମେ ଆସି ବନ୍ଧୁର ପଥ
ଲଗଇ ଏଡା, ମିଛ ପରି ତ,
ସଖି ରେ ଆଜ ଦାଢ ହୋଇଛୁ ଗତ
ଅବଗାହ୍ନ କି ପ୍ରୀତି-ସରିତ ?

ପହଣ୍ଡେ ଗଲେ ସେ ଯେ ପଛେ ଅନାଏ
ଅଛି କି ଗଳ୍ପ ପ୍ରିୟ ଲୁଆଡ଼େ
ନିତି ତ ଅପେକ୍ଷିକା ପଥ ରେ ଥାଏ
ମିଳନ ଖୋଜୁଥାଏ ଉହାଡ଼େ ।

ନିତି ତ ଭୁଜମାଳା କରଣେ ଟେକେ
ପ୍ରଥମ ପଥ ବଧୂ-ହୃଦୟେ
ନୟନ-ଲୁହେ ପ୍ରିୟ-ସ୍ୱପନ ଦେଖେ,
ଦଳିତ ତାର ହିୟା ଖରଦେ ।

ପ୍ରିୟ ବି ନିତି ତାର, ପ୍ରଣୟ ଲାଗି
ପ୍ରଥମ ପଥ କରେ ଯାଚନା
ପ୍ରତ୍ୟହ ସ୍ୱୟଂବରେ ତା କର ମାଗି
ଭୁଲଇ ସବୁ ଦୁଃଖ ଲାଞ୍ଛନା ।

ପ୍ରୀତିର ଆଦ ଅଛି ଶେଷ ତ ନାହିଁ
ନିତି ସେ ନୂଆ, ଜଷା ପଥ ରେ
ବନ୍ଧନେ ଲଭନ୍ତି ଏକା ମୁକତି ପାଇ ।
ସ୍ୱରଗ-ଅନୁଭୂତି ଶପଥରେ ।

---

# ଅତୃପ୍ତ ପ୍ରେମ

ଦୁଇଟି ନୟନରେ ନ ଆସେ ତୃପ୍ତି
ଲକ୍ଷ ନୟନରେ ଚାହିଁବ
ଗୋଟିଏ ରସନାରେ ନ ପାଏ ମୁକ୍ତି
ବଚନ,—ଆଉ ହେଲେ ଗାଇବ ।
ଦୁଇଟି ଭୁଜେ ଭଡ଼ ସାରିଲେ ତାହାରେ,
ମୁଗ୍ଧ ଦେହ ଆଉ ଖୋଜଇ
ଅଧର ଯେତେ ପାନ କଲେହେଁ ଝଲସି
ଅଗ୍ନି ପୁଣି ଉଠେ ଜାଗଇ ।
ଗୋଟିଏ ବକ୍ଷରେ ପୀରତି କୁଳାଏନ,
ନୟୁତ ବକ୍ଷ ମୁଁ ଲୋଡ଼େ ଯେ,
ତାହାରେ ଯାବ, ସବୁ ଭୁଲିବ ଯାଲେଣି,
ମହିବ ତାର ଅବଗାହେ ଯେ ।
ଆଜନ୍ମ ଲୋଡ଼େ ତେଣୁ ମତେ ହେ ଦେବତା
ମିଳାଅ ପଞ୍ଚ ଏ ଭୂତରେ;
ସୀମାକୁ ତେଜ ମୋର ଅସୀମ ମମତା
ବ୍ୟକ୍ତ ହେବ ବହୁ ରୂପରେ ।
ଜ୍ୟୋତ୍ସ୍ନା ମଳୟରେ ମିଶି ମୁଁ ପ୍ରିୟାରେ
ଦେଇବ ମୋ ଆଶ୍ଲେଷ ଅଗଣ,
ମିଳିଲେ ମାଳାକାଶେ ତାରାରେ ତାରାରେ
ତୃପ୍ତ ହେବ ଅବଲୋକନ ।

———

# ଯୋଗ୍ୟ ହେବ

ବିକଚ କୁସୁମ କର ନାଥ,
ଯୋଗ୍ୟ ହେବ ତା କେଶ ଶୋଭନେ,
ବିଶୁଦ୍ଧ-ସୁବର୍ଣ୍ଣ ମତେ କର,
ଲାଗିବ ବା ତା ଦେହ ଭୂଷଣେ ।

ଜୀବନକୁ ଶୌର୍ଯ୍ୟମୟ କର
କାଳେ ତାର ପାଇବ ପ୍ରଶଂସା,
ବିଶୁଦ୍ଧ ପ୍ରତ୍ୟୁଷ କର ମତେ
ତା ସଖୀତ୍ୱ ପାଇବ, ଭରସା ।



# ବନ-ଲକ୍ଷ୍ମୀ

ପଉଷ ଶେଷ, କଟା ସରିଛି ଧାନ,
ଉପରବେଳା, ହୋଇ ଆସେ ସାୟାହ୍ନ,
ପୁଅକୁ ସାଥି କରି                    ଜାଆନ୍ତା ଗୁଇ ଘର,
ବିଲରେ ଧାନ ବାନ୍ଧେ ଜନା ପଧାନ ।

ଦୂରରେ ଥାନେ ଥାନେ ଲୋକ ଗହଳ
ଦିଶୁଛି; ଧାନ-କଟାବନ୍ଧା ଚହଳ,
ଲଦି ଶଗଡ଼ କାହିଁ                    କୃଷକ ନଏ ବାହି,
ଘଣ୍ଟେ ତା ପୁଅ ଝିଅ କରନ୍ତି ଗୋଳ ।

ଦୁଇଟି କଆସାରୁ ଯାଇଛି ଏକ,
ସାହୁନେଲ ସାଉଁଟି ଦେଖାଇ ଲେଖ,
ବାକା, ଏ ଚକେ ଭୂଇଁ                    କେଉଁ ଥିଲା ଆସଇ,
ତଥାପି ଅଛି ଲାଗି ନୂଆଁ ର ବେକ ।

କେରାକୁ କେରା ପୁଅ ଆଣେ ଗୋଠାଇ
ପଧାନ ଛେକି ଛେକି ଦିଏ ସଜାଇ
ସ୍ଥାଣ-ବୋଝର ପରି ସେନେହେ ହାତ ମାରି
ଉଠାଏ, ପୁଣି ଚଳେ ଦିଏ ବହୁଇ ।

ଛୁଡ଼ଏ ହେଉଁ ଗଦା ସେନେହ-ଭରେ
ନଇଁ ପଡ଼େ ପଧାନ ସ୍ପର୍ଶ-ସୁଖରେ,
ସ୍ୱ-କର-ଜାତ ଲକ୍ଷ୍ମୀ ଦେଖି ମୁଗ୍‌ଧ ତା ଆଖି,
ଥରକୁ ଥର ଧରେ ଧାନ୍ୟ-ଗୁଚ୍ଛକେ ।

ଏକାଳେ ପୁଅ ଦୂରୁଁ କହନ୍ତ ନଇଁ,
"ବାପା, ଶୁଣିଛୁ ? ଚଳେ ନାହିଁ ମୁଁ କହୁ,
ପିଆଦା ଆସିଲାଣି ସାଙ୍ଗେ ପଠାଣ ଆଣି,
ଏଥର ନାହିଁ ଦେଲେ କପରି ରହୁ ?"

ଗୁଳ ଖାଇଲା ପରି ହୋଇ ପଧାନ
ଆକୁଳେ ଜାକି ଗଦା କରଇ ଧ୍ୟାନ,
"ଲକ୍ଷ୍ମୀ ମା ମୋ ଶରଣ; ମୋ ପିଲାପିଲ ପ୍ରାଣ
ଛୋରଣି ମନ୍ଦେ ବନା ଗଲାଟି ଜାଣ ।

କହିଲୁ ନାହିଁ ବସ୍ତା ଭଳେ ତୁ ପ୍ରାଣେ
ଶରମ-ଫଳ କହିନେବେ ପଠାଣେ,
ରହି ରହିଟି ପେଟ ଧରି ଏ ଛଟପଟ
ସମ୍ଭାଳି ଯିବ ସାରା ବର୍ଷ କି ଟାଣେ ?"

ପେଟ ମୋ ପୂରୁଯାଏ ଦେଖିଲେ ତୋତେ
ତୋର ମା ଦୟା ନାହିଁ ଜାଣିବେ ଶତ୍ରେ,
ଖସ ଚସ ସମ୍ଭାଳ                 କପାଳେ ଝାଳ ମାର
ପିଠିରେ ନାହିଁ କନା, ତୋଷଣି ପେଟେ !"

ଦେଖାଇ ଏଣେ ଠାଣ, ପୁଅରେ ହସେ
"ଛଡ଼ା ଭୁ ଆଣ, ଜାଡ଼ ମାଡ଼ ଯେ ଆସେ,
ଖଜଣା ଶୁଝା ଶୁଝି                 ଦେବ ନ ବୁଝା ବୁଝି ?
ଏଠି ସେ କଥା କହାଁ ମଥାରେ ପଶେ ?"



# କୋଣାର୍କର ଲାସ୍ୟଲୀଳା

—ସ୍ପନ୍ଦନ—

## ଜ୍ୟୋତ୍ସ୍ନା

ହେ ପାଷାଣି ! କପାଁ ଝାଣି-
ଅଛ ନଭ-ଓଢ଼ଣା,
ଆସିଲ ଯେ ଦୃଷ୍ଟି ଏବେ
ତବ ସଖୀ ଜୋଛନା ।
ନଗରଜନ ଶୁନ୍‌ଶାନ୍‌
କେନ୍ତ ନାହିଁ, ଶୂନ୍ୟ,
ମୂକ ନାସ୍ତି ଆସ ଘର
ପୀଠ କର ପୂର୍ଣ୍ଣ ।
ସଙ୍ଗିମା ରଙ୍ଗିମା
ଚିର ମୂର୍ତ୍ତି ଅମର,
ଏକା ମୋରେ ନିଶୀଥରେ
ଖୋଲ ତବ ଅଧର ।

ଜନମରୁ ଉନ୍ମେଷରୁ
ସଙ୍ଗୀମା ମୁଁ ତବ,
କାଳେ କାଳେ ତବ ଘଟେ
ଚୁମ୍ବନ-ଉତ୍ସବ ।
ଦୁହିଁକର ଜନମର
ଧାନ ରୂପ-ସାଗର,
ତେଣୁ ଚିର- ଷୋଡଶୀର
ବନ୍ଧନ ଆମର ।
ମୂକ ଆମେ ଲୋକ ଜାଣେ
ଭାଷା ନାହିଁ ଆମର,
ମିଥ୍ୟା ତା ଆମ କଥା
ଆମକୁହିଁ ଗୋଚର ।
ଆସ ଆସ ଶିଳା-ବାସ
ଖୋଲି ଆଲୋ ରୂପସି,
ବନ୍ଧନ ଖଣ୍ଡନ
କରି, ଦେଲା ଋଳସି ।

## ପ୍ରଥମ ବିଗ୍ରହ

କେ ଅଛ ଲୋ ଖୋଲିଖୋଲ୍
ସରମର ଓଢ଼ଣା,
ଜୋଛନାରେ ଦେଖ ବାରେ
ଧରଣୀର ମାଜଣା ।

ପୂର୍ଣିମା ଜହ୍ନ ମା
ଡାକ ଦେଲା ନରମେ,
ଗୁହ୍ଞଜନ କଣି କଣି
ଚମକାଇ ମରମେ ।
ଧୀରେ ଧୀରେ ଚକ୍ଷୁରେ
ମେଲାଇଲି, ନୟନେ
ମନଘର ସମ୍ଭୁର
ନ ଦେଖିଲି ନୟନେ ।
ତେଣୁ ସଖି, ଦେଲା ଡାକ
ଜ୍ୟୋଛନାରେ ଖେଳିବା,
ଢଠ ଢଠ କପାଁ ମଠ
ନାଟ ପୀଠେ ଚଳିବା ।

## ଦ୍ୱିତୀୟ ବଗ୍ରହ

ସନ୍ଧ୍ୟ କି ଲୋ ? ଡାକ ଚୋର
ବଁଧୁବଳା ମଟେ ଲୋ,
ଥିଲି ମର ଲାଜେ ସଡ଼ି
ଧର ପାଣା ହାତେ ଲୋ ।
କଏ ସେ ଲୋ ବଲ ବଲ
କର ଆଜ ଗ୍ନୁହିଁଲ,
ଧୀରେ ମୋର କକ୍ଷରେ
ଚିପି ଚିପି ଛୁଇଁଲା ।

କେଶପାଶେ ଆଉଁସି ସେ
ଶୁଖାଇଲା ମରମ,
ଗଣ୍ଡରେ ମାରି କରେ
ସାରିଦେଲା ସରମ ।
କଏ ସେ ଲୋ ଥରଥର
ଫେରି ଫେରି ମୋ ପାଶେ
ବାର ବାର ଢରଢର
କଲା ମୋତେ କି ଆଶେ ।
ସେ ସରମେ ମନେ ମନେ
ମରିଗଲି ସଖି ରେ,
ପାଖ ସଖୀ ଅଛୁ ଦେଖି
ସବୁ କଥା ଆଖିରେ ।

## ତୃତୀୟ ବିଗ୍ରହ

କା ବଚନ କଙ୍କଣ-
ଧ୍ୱନି ଜାହା କରଇ,
ଶୁଭେ ତେଣୁ,— କମ୍ପାଁ ଭେଣୁ
ଥରେ ପୀଠ ତଳର ।
ଡାକେ ଆଲୋ— 'ଜାହା ଭୁଜେ
କଙ୍କଣ ବାଜେ ଲୋ,
ଜୋଛନାରେ ମଦଭରେ
ଫିଙ୍ଗିଲୁ କେ ନଚେ ଲୋ ?'

## ପ୍ରଥମ ବିଗ୍ରହ

ଆମେ ସନ୍ଧ ଶ୍ୟାମା, ମୂର୍ଚ୍ଛି
ଆସ ଆସ ଏଣିକି
ଆଣ ଡାକ ବାକ ସଖୀ
ବାଣୀ ଆଜ ସ୍ୱଣିକି ।

କୁସୁମାକୁ ଡାକବାକୁ
ପଠାଇ ଦେ ଖବର
ଜୋଛନାର ସଂସ୍କାର
ପାଣି କରେ ପଥର ।

ଚାହିଁାକର ପାଷାଣର
ଦେହ ନ ଚମକେ କି,
ଆଣିନ୍ତ କେ ଯୁଁକ ନ୍ତଖେ
ଅରସିକା ଏଥିକ !

ଡାକଆଣ ଆଖି-ବାଣ
ଛୁଡ଼ିବେ ଏ ବେଳାରେ,
ବନଯାକ ରନ୍ଧ ମୂକ
ସଡ଼ୁଥିବେ ଦେଳାରେ ।

ନଶୀଥିମା କଙ୍କିଣୀ
ନାଦେ ଦେବ ମୁଖର,
ବେଳା ଭୂମି ପରଣମି
ଚୁମିବ ଶ୍ରୀପଦର ।

## ଚତୁର୍ଥ ବିଗ୍ରହ

ମଲି ମଲି ପାଖେ ଥିଲି
ଲୋକ ମତେ ଡାକୁ ନା,
ଦୂର ଜନେ କି କାରଣେ
ଏତେ ସମବେଦନା !
ଭୁଲ ସଖି, ଆଖି ଆଖି
ମିଳାଇବା ସକଳେ,
ଦିନଯାକ ଅଛେଁ ମୂକ
ଥିଲେ ମିଶେ ପାଖରେ ।
ଜୋଛନାର ମଧୁକର
ପରଶି ମାଧବରେ,
ବନ୍ଧନ ଭଞ୍ଜନ
କରେ ଅବସ୍ତୁବରେ ।
ଆଜ ସଖି, ଦେଖିନ କି
ବନ୍ଧୁ ଆଖି ନିରେଖି,
ଲୁହିଁବାର ବାରବାର
ଛୁଇଁବାର କି ଦେଖି ।
ସେ ପରଶେ ଲାଜବଶେ
ହୋଇଥିଲି ଶୀତଳ,
କି କାରଣେ ପଣେ ପଣେ
ଆସିଁତ ସେ ସକଳ ?

ହଜ ବ୍ଲୁ ଲ୍ଲ ଜ୍ୟୋତ୍ସ୍ନାର
ଆହ୍ୱାନ ମାନବା,
ନଶୀଥରେ ଜୀବନରେ
ଜଡ଼୍ଭ ଭଡ଼୍ ଅଣିମା ।

## —ଉଦ୍‌ଯୋଗ—

କ୍ଷଣକରେ ପାଷାଣୀଏ
ପାଷାଣର ପୀଠରେ
ବଜାଇଲେ ନୂପୁର;
ମୃଦୁ ମୃଦୁ ହସ, ମୁଖେ
ଅଳସ ଛ ଘୁଙ୍ଘ ନ
ଉସାଣିଚ ବପୁର ।

ଅଥର ଅପର ଦେହେ
ଦେହ ଢାଳ ଅଳସେ
ଚଳାଇଲେ ଚରଣେ,
ସହସା ସେ ନଇଜନ
ମଧର ଧ୍ୱନଲ
ଚଳ ପଦ-ଭୂଷଣେ ।

ଜୋଛନାର କୋଟି ରେଖା
ଲୁଚକାଳ ଖେଳଇ
ପାଷାଣୀଙ୍କ ଅଙ୍ଗେ,
ସେ ପରଶେ ଯୁଗ ଯୁଗ
ଶିଳା ଉଠେ ଚମକ
ଜୀବନ୍ତ ରଙ୍ଗେ ।

ଲୀଳାମୟୀ ହେଲା ଶିଳା
ଶତ ଶିଳା-କୁଞ୍ଜେ
ବିକଶିଲା ଜୀବନ ।
କୁନ୍ଦର ବିଗ୍ରହ
ସ୍ପନ୍ଦନେ ଜାଗିଲେ
ଶୀତ୍କାର୍ ପବନ ।

ସ୍ୱନେ ଘନ ରଣଝଣ
ପାଷାଣର ଭୂଷଣ
ଦୋଳେ ଅବତଂସ,
ସଖୀଗଣେ କର ଥୋଇ
ଆଡ଼ ଆଖେ ଅନାଇ
ପରଖନ୍ତି ପରଶ ।

କୁଞ୍ଜର-ଗତି ଶତ
କ୍ରମେ ହେଲେ କୁଞ୍ଜ,
ଧୀରେ ଧୀରେ ବାହାର,
ଅଞ୍ଜଳିରେ କା ଧୂପ
ବୀଣା କାର କରେ
ମୁରଜ ବା କାହାର ।

ଶୁଭେ କଥା ଭୁନ ଭୁନ
କାହିଁ ଗଲେ ଆଜ ଗୋ
ଶ୍ୟାମା କେଉଁ ଜହାଡ଼େ,
ନାଟ ପିଠେ ଯିବା ଭଲ
ନାଟ ଭାଲେ ନ ଭଲେ
ମନ ନାହିଁ କୁଆଡ଼େ ।

ଆନ ବୋଲେ, 'ପ୍ରିୟ୍ ଚର,
ଧରିଛଁନ୍ତ ବାହୁରେ
ଅଙ୍ଗ ମୋ ଅଳସ,
ପଦ ମୋର ଖଲଖଲ
ନାଚିବାରେ ହୁଏ ନେ
କାଖେ ଧର କଳସ ।'

ଆନ କହେ, 'କେତେ କାଳ
ଧୀପ ଖାଲି ଧରିବ
ରହି ଏକ ଥାନରେ,
ନରକରେ ପଡ଼ି ସତ୍ରୁ
ଶିଳ୍ପୀ, ସେ' ନ ଦେଲା
ରସ ଟିକେ ପ୍ରାଣରେ ।

ପାଖେ ମୋର କୁଞ୍ଜରେ
ଦେଖେ ନତ ତରୁଣ
ଚୁମଇ ତରୁଣୀରେ,
ଭାଗ୍ୟେ ମୋ ନାହିଁ ତାହା
ଜନ୍ମ କି ଜନମୀ
ଦୁହେଁ ଏକ ଖଣିରେ ।'

ଆନ ବୋଲେ, 'ତୁମେ ଯାଅ
ନାଚ କର ସଙ୍ଗ ନେ
ନାଚି ମୁଁ ତ ଅଥିର,
ନତ୍ୟ ମୁଁ ନାଚ କର
କ୍ଷୀଣ ହେଲା ଚରଣ
କଟି ମୋ ଶିଥିଳ ।

ଯୁଗ ଯୁଗ କଲି ନାଚ
ଦେବତାର ପ୍ରସାଦେ
—ଶେଷ ନାହିଁ ହୋଇଲା,
କେବେ ମୋତେ ମନା କରି
'ରହ' ବୋଲି କହିବେ
ଶ୍ରବଣ ନ ଶୁଣିଲି ।'

ଆନ ବୋଲେ, 'ସାର୍ଥକ
ଜୀବନ ମୋ ସଜନି,
ବୀଣା ମୁଁ ଯେ ବଜାଏ
ମୁଁତ ଶୁଣେ, ଶୁଣେ ପ୍ରିୟ
ଶୁଣେ ପୁଣି ଦେବତା
ମରମ ମୋ ହଜାଏ ।'

ଆନ ବୋଲେ, 'ଦେଖ ସଖି,
ରସିକ ସେ ଶିଳ୍ପୀ
ପ୍ରିୟ ଶୁକେ ଉରଜେ
ଲଗାଇ ଦେଇଛି, ଶୁକ
ପାନ କରେ ଲକ୍ଷ
ସୃଜ ମଧୁ-ଦରଜେ ।'

ଆନ ବୋଲେ, 'ଯୁଗ ଯୁଗ
ସଖୀ ମୋର ଯତନେ
ବାଁଧୁଅଛି କବରୀ,
ଧରିଅଛି ଯୁଗ ଯୁଗ
ଦରପଣ ମୁଖକୁ
ଆଉ ଏକ କଣୋଷୀ ।'

ଆନ କହେ, 'ଶିଳ୍ପୀ ସେ
କରିଅଛି ପୃଥୁଳ
କେଡ଼େ ସଖି, ଜୁଡ଼ାରେ
ପୀନ ପୁଣି ବକ୍ଷ ନେ
କ୍ଷୀଣ କଟି ବନ୍ଧୁର
କେସନ ଏ ଭାରରେ ।'

ଆନ କହେ, 'ଚରଣରେ
ପିଁଧିଥିଲ ମଲ୍ଲ ଯା
ଛୁଡ଼ଲଣି ଆନକେ,
ଯତନରେ ଧରି ପଦ
ପରମ ସୋହାଗରେ
ପିଁଧାଇବ ଆନ କେ ।'

ଆନ ବୋଲେ, 'କାର କାର
ଯୌବନ କଞ୍ଚୁ ବା
ଅଙ୍ଗରୁ ଖସଇ,
କଦମ୍ବ ତଳେ ଥାଇ
ତନ୍ୱୀ ସେ ନାଗର
କ୍ଷୟ ନାହିଁ ଘଟଇ ।'

କେ ବୋଲଇ, 'ଏ କି ମଜା
ମୂକ ହେବା ବଦସେ
ଡେଇଁବା ଭଜମାରେ,
କେ ଜାଣଇ ଅଛି ପ୍ରାଣ
ପାଷାଣ ଏ ଅଙ୍ଗେ
ପାଷାଣ ଧମନୀରେ ।'

କେତେ ଶତ ଯୁଗ ଗଲା
କେହ୍ନ ତ ନ ଜାଣିଲେ
ଜଣା ଖାଲି ଆମରେ;
ଭଲ କଥା,—ଜଣାଗଲେ
ରଖିବେ କି ଆମକୁ
ନରେ ରୂପ ପ୍ରେମରେ !

ନ ହେଲେ ପଁଠାର ଶିଳା
ଢଳବେବେ ରୂପରେ
ଭୋଗିବାକୁ ତାହାରେ;
ଭଲ ଆମେ, ଅଙ୍ଗାତେ
ରୂପ ରଖି ପାରିଛୁ
ପାଷାଣର ସୁଷମାରେ ।’

“ମନେ ଅଛି ସେ ଦିନ କି
ବହୁ ଯୁଗ ତଳେ ଲୋ
ସନ୍ଧ୍ୟାର ଆଲୋକେ,
ଶିଳ୍ପୀ ଯେ ଦିନ ମତେ
ଗଢ଼ିସାରି ଯତନେ
ନିରେଖିଲା ପୁଲକେ ।

ଚାହିଁଥାଏ ଖୋଜିଥାଏ
ନାହିଁ ପାରେ ଘୁଡ଼ ସେ
ମାଜିଦିଏ ଲପନ,
ସଖାମେଳେ ଫେରୁଥାଏ
ଚାହିଁଥାଏ ପଛକୁ
ବାଁକେ ଢାଳି ନୟନ ।

କି କାଳ ସେ ଗଲା କାହିଁ
କୋଳାହଳ ଜନତା
ଅହରହ ମୁଖର
ଯାଇଛୁ ତା ଭଲ—ସଦା
ଆଖିତଳେ ରହିବା
ବଡ଼ ଦୁଖ ରୂପର ।"

"ଝୁଲ ଝୁଲ" ବୋଲେ ଆନ
"ଜୋଛନା ସେ ବଢ଼ିଲା
ଅଥୟ ଲୋ ପରାଣ,
କେତେ ଘଢ଼ ମୁକ୍ତିରେ
ମାଟି କରି ଦେବା କି
ନାଚେ ଝୁଲ ମୋ ପ୍ରାଣ ।"

—ନୃତ୍ୟ—

ନାଚେ ମନ୍ଦିରେ    ମନ୍ଦ୍ର ମୁରଜ    ଧ୍ୱନଇ
ଶତ ଶତ ଶିଳା-    ପଦ, ଚଞ୍ଚଳ    ଚଳଇ ।
ବଂଶୀ ମୁରଜ    ବୀଣା କରତାଳ    କାହାଳୀ
ଖଞ୍ଜଣୀ, ମନ-    ରଞ୍ଜଣୀ ଅବା    କାହାରି ।
ବଜାଇଲେ ଶତ    ହଜାଇ, ସକଳ    କାମିନୀ,
ପୂର୍ଣ୍ଣ ହୋଇଲା    ଶୂନ୍ୟ ଜ୍ୟୋଛନା-    ଯାମିନୀ ।
ଶୂନ୍ୟ, ବଜନ    ମନ୍ଦିରେ ଧୀରେ    ଝାଇଁଲା
ତପ୍ତ ରୁଧିର    ପାଷାଣେ ଯେସନେ    ବହିଲା ।
ପୀବରବକ୍ଷା    କ୍ଷୀଣମଧ୍ୟମା    କାମିନୀ
ପୃଥୁଳଜଘନ    ଯେମନ୍ତେ ଚଳାଏ    ଦାମିନୀ ।

ପୃଥୁଳ ଜୂଡ଼ାର କୁସୁମର ହାର ଭୁଟଇ
ଉରଜ କମ୍ପେ, ମାଳା କାଞ୍ଚନ ଫିଟଇ ।
ବର୍ତ୍ତୁଳ ମୁଖ ସ୍ନିଗ୍ଧ କବ୍ରେ ଯୁବତୀ
ରଖି ଧୀରେ ଧୀରେ ନୃତ୍ୟ ରଚଇ ଆରତି ।
ଦୋଳଇ କଣ୍ଠ- ଦୋଳକ, ଖେଳଇ ଚକୁର
ଅତୁଳ ଚରଣ ରୁଣିତ ନୂପୁରେ ଆକୁଳ ।
ଅଧରେ ନ ଧରେ ସ୍ମିତରେଖା, ଆଖି ଝଲକେ,
ବରଭୁଜ ଖରେ ଚଳଇ ପଲକେ ପଲକେ ।
ବନ୍ଧନହୀନ ଆନନ୍ଦ ବନ୍ଧୁ ଭୁରଜେ
ଗାଇଲେ ସକଳେ ଛନ୍ଦେ ଆପଣା ଚରଜେ—
"ଅପ୍ସରୀ ଆମେ ପୁଷ୍ପ-କୋମଳ- ସୁଷମା
ପାଷାଣ ବାହାର, ଭିତରେ କୁସୁମ- ମରମା ।
କଳ୍ପଲୋକରୁ ଆମେ ରମ୍ଭୋରୁ ଧରାରେ
ଝଗଡ଼ ନେଲୁଁ ଅବତରି ଟାଣ ଶିଳାରେ,
ଖୋଲି ସହସ୍ର ଶିଳ୍ପୀଙ୍କ ଆରା- ଧନାରେ;
ତାଙ୍କ ରୂପ ପୂଜା ସମାଭୂତ ଆମ ଶିଳାରେ ।
ସେ ନାହାଁନ୍ତି ଆଜ ନାହାଁନ୍ତି ଦେବତା ଦେଉଳେ
ନ ଆସନ୍ତି ମନ୍ତ- ଦରଶନେ ଏଥି ଘୋରେ ।
ଗଲେ ରଜା ରାଣୀ, ଲୁଚିଗଲା ରାଜ- ବଇଭବ
ସମ-ସମସ୍ତର କନ୍ତୁ ନାହିଁ, କହ୍ନ କା ହେବ ?
ଆମେ ଅଛୁଁ ଖାଲି କାଳ ପ୍ରାନ୍ତରେ ଅଙ୍ଗେ
ଧରି ଚିରକାଳ ଚିର ନବରୂପ ରଙ୍ଗେ ।
ଅମର ଯେ ଆମେ, ମାନସଲୋକର ସୃଜନା
ସ୍ଥୂଳ ଧରଣୀର ମୃତ୍ୟୁ ଆମରେ ଅଜଣା ।

ଯୁଗ ଯୁଗ ଧରି ଝରୁଛି ଚେଣୁ ରୂପରୁ,
ଅମର ଏ ଲୀଳା କଠିନ ଏ ଶିଳା- ସ୍ତୂପରୁ
ଜଗତ ଜାଣଇ ମୂକ ଆମେ, ହାଣ ପଥରୁ
ଅଜ୍ଞ ସେମାନେ ଜାଣିବେ କି, ଭାଷା ରୂପରୁ !
ସଙ୍ଗିନୀ ଆମ ଚନ୍ଦ୍ରିକା ସିନା ନୀରବ
ତା ବୋଲି କି ନାହିଁ ତାହାର ଜୀବନ- ବିଭବ ?
କୁସୁମେ କୁସୁମେ ଚୁମିଦେ ଅଧରେ ଯାମିନୀ
ଅଧରେ ଲକ୍ଷ ପ୍ରେମ-ଆକୁଳ କାମିନୀ ।
କୁମୁଦ ସଙ୍ଗେ ନୃତ୍ୟ ତାର ଯେ ପୀରତି
ଜୀବନ୍ତ ନକ ମଜ୍ଜନ ବୋଲି ସେ ଆରତି ।
ଆମେ ସେହିପରି; ଶିଳ୍ପ-ଲୀଳା ତଳେ ଜୀବନ
ସୁପ୍ତ ଯାହାର, ତଳେ ଲୁଚିଅଛୁଁ ସ୍ୱପନ ।
ମର ମନୁଷର ଅମର ଯା ତହୁଁ ଜନମ
ଛୁଇଁ ନାହିଁ ପାରେ ଆମକୁ ଚେଣୁ ଗୋ ମରଣ ।
ମରି ସେ ଶିଳ୍ପୀ ଚାଲିଲେ, ମରଣ- ପଥରେ
ଅ-ମର ସୁଷମା ଲୁଚିଗଲେ ଆମ ପାଖରେ ।
ଯୁଗ ଯୁଗ ଧରି ବଞ୍ଚିଅଛୁ ଚେଣୁ ପଥରୁ,
ଶୂନ୍ୟ ଏ ବେଳା କହି ନାହିଁ ରୂପ- ମୁଖରୁ ।
ଯୋତ୍ସ୍ନାରେ ଆମେ ଲୁଚକାଳି ଖେଳୁଁ ସକଳେ,
ନୀରବ ନିଜନ ଏ ବେଳାପ୍ରାନ୍ତ ପଥରେ ।"

ଦେଖ ରସଲୀଳା ଫେନ୍ଦୁ ବେଳ ଅତି ମତ୍ତ
ରୂପଭ ନବନ୍ଦ ସେ ଲୀଳା ଭୁବନ ଚିତ୍ତ ।
କବି ଲେଖନୀରେ ଶିଳ୍ପୀ ତୁଳୀରେ ଯାହାର,
ଯୁଗେ ଯୁଗେ ହୁଏ ରହସ୍ୟମୟ ବିହାର ।

ସେହି ରୂପମୟୀ ନିଖିଳ ଭୁବନ- ବାସିନୀ;
ମଳୟ-ଗନ୍ଧା ଶରତ-ଜ୍ୟୋତ୍ସ୍ନା- ହାସିନୀ ।
ପୁଷ୍ପ ତାରକ- ଭୂଷଣା, ଅଭ୍ର- ଚିକୁର
ଦୂର୍ବାଚରଣା ଅନନ୍ତ ଦିଗ- ଦୁକୂଳା ।
ରୂପ-ଲକ୍ଷ୍ମୀ ସେ, ପାଷାଣରେ ଯେବେ ଶରୀର,
ଶୂନ୍ୟ ସେ ପୀଠ ଚଳରୂପେ କଲେ ଅଧୀର ।
ଚିତ୍ତ ସେ ନର୍ତ୍ତନ- ଲୀଳାରେ, କବିର ମାନସ,
ସ୍ତବ୍ଧ ଚକିତେ ମୁଗ୍ଧେ ହୋଇଲା ଅବଶ ।

## —ଶିଳ୍ପୀ ବନ୍ଦନା—

ବନ୍ଦେ ବାର ଶତ ଶିଳ୍ପୀ, ନାମହୀନ ଧାମହୀନ ପ୍ରାଣୀ,
ଇତିହାସ ନାହିଁ ତବ, ତବ ଲାଗି ମୂକ କାଳ-ବାଣୀ ।
ଯତ୍ନେ କିଛି ରଖି ନାହିଁ, ଯାଇଅଛ ଥାପି ମାତ୍ର ଏଇ,
ଶିଳାରୁ ବିରାଟ କଥା, ଏ କୋଣାର୍କ ତବ ସ୍ମୃତିଦେହୀ ।
ପ୍ରାଣହୀନ ଶିଳା ପରେ ସବୁ ଦେଇ ଢାଳି ଜୀବନର,
କି ବଧାଇ ଥିଲ ପାଇ, ମହାରଜା ହସ୍ତରୁ ତୁମର ?
ତୁମେ ନାହଁ, ନାହିଁ ରଜା ପୁରସ୍କାର ଯାଇଛି ସଙ୍ଗତେ,
ଦେଶ, କାଳ, ନାମ, ଧାମ କିଛି ତବ ନାହିଁ ଏ ଜଗତେ ।
ଅଛି ମାତ୍ର ଶିଳାସ୍ତୂପ, ଯାହା ଅଙ୍ଗେ ବାର ବର୍ଷ ଧରି,
ଉତ୍ତପ୍ତ ଏ ମରୁପ୍ରାନ୍ତେ, ଶ୍ରମଝାଳେ ମାନସୀ ସୁନ୍ଦରୀ—
ଖୋଳୁଥିଲ ଧୀରେ ଧୀରେ, ଶ୍ରମ ମୋହେ ଲଭ ପୁରସ୍କାର,
ସେହି ମାତ୍ର ବଞ୍ଚିଅଛି, କାଳଦନ୍ତେ କରୁଣ ଧିକ୍କାର ।
ଦରିଦ୍ର କୁଟୀରେ ବସି, ଚୀର ପିନ୍ଧି କବି ବାର ଶତ,
କେମନ୍ତେ କଳ୍ପିଲ ମନେ ଅପରୂପ ରୂପ ଶତ ଶତ ?

ରଜାର ଭୃତ୍ୟତା, ନିଜ
ହେ ସହସ୍ର କବି, ତବ
କେମନ୍ତେ ତୋଳିଲ ସତେ ?
ପାଷାଣର ସେ କବିତା,
ଭ୍ରମରେ ଭୁଲିଛୁ ଜାତି
ସ୍ଥାନ ତବ ଇତିହାସୁ,
ବଞ୍ଚିଥିବ ସାଧାରଣ
କ୍ଷତି କିସ ନାହିଁ ଯଦି
କିନ୍ତୁ ସ୍ଥାନ ଜୀବନରେ
ରଖିଗଲ ଏ ଶିଳାରେ,

ସ୍ଥାନଟାର ବନ୍ଧୁ ଊର୍ଦ୍ଧ୍ୱେ ଭାସି,
କଳ୍ପ-ସରୁ ଏ କମଳ-ରାଶି
ଶିଳାଦେହେ ଦେଲ ଚାହାଲେଖି,
ବିଶ୍ୱ ପଡ଼େ ମୁଗ୍‌ଧ ନେତ୍ରେ ଦେଖି ।
ସେଥିରେ ତ କ୍ଷତି କିଛି ନାହିଁ ,
ଏ ପୁରାଣ ବଡ଼ ନିକା ଭାଇ ?
ସହସ୍ରଙ୍କ ପରି ତ ଜୀବନ
ଧନ-ରୂପ କେଶର ବର୍ତ୍ତନ ?
ମନ-ନେଳକୁ ଆଣିଲ ଯେ ଧନ,
ସେଇ ତବ ଜୀବମା ପରମ ।



## ସମର ବିମୁଖ

୧

ବହିବା ଦୁର୍ବଳ ସ୍କନ୍ଧେ ଦୁର୍ବହର ସ୍ତୂପ
ଜୀବନେ ତାହାଙ୍କ ଗୁରୁତମ ଅଭିଶାପ ।
କର୍କଶ କଠୋର ବାଣୀ ଯହି ଦରବାର
ପାଇବ କି ଠାଣି ତାହା ମୃଦୁ ବୀଣା-ତାର ?
ମାଟିର ପ୍ରଦୀପ, ସେ ତ ଜୀବ କୁଟୀରର
କିପରି ସେ ଆଲୋକିବ ରାଜ-ଦରବାର ?
କୁଣ୍ଠିତ ଜୀବନ ଯୁଦ୍ଧେ ଜୟଟୀକା ପାଇଁ
ଶ୍ରଦ୍ଧା, ଶକ୍ତି କିଛି ହେଲେ ମୋର ଥିଲା ନାହିଁ;
କେ ଦେଲା କିପାଇଁ ଠେଲି ଏ ମହା କନ୍ଦଳେ
ତେଣୁ ତୂର୍ଣ୍ଣ ବିକଳ ମୁଁ ବାହାରେ ଅନ୍ତରେ ।
ସର୍ବାଙ୍ଗେ ମୋ ଜୀବନର ଷୂର କଶାଘାତ
କ୍ଷତ-ରକ୍ତ ମୋର ଧୂଏ, ମୋ ଲୋତକପାତ ।
ହୋଇ ଭଗ୍ନ, ଭ୍ରଷ୍ଟ, କ୍ଳାନ୍ତ, ଜୀବନ-ସମରେ
ଏହି ଭାଗ୍ୟ ସ୍ପୃହେ ମୁହିଁ ଆଜ ମରମରେ—
ଦୂରେ ନଇପାର ଯହିଁ ନାହିଁ ପାରେ ପଶି
କେଉଁ ଦୂର ବାରିଧିର ବେଳାବନେ ବସି,

ଚାହିଁ ଚାହିଁ ଆକାଶର ନୀଳ ଛତ୍ରତଳେ
ମେଘମାଳା ଭାସିବାର ସମୀର କୌଶଳେ,
ବନସ୍ପତି ଛାୟାତଳେ, ଘାସର ଆସନେ
ବସି ମୁଁ ଭୁଲିବି ଦୁଃଖ ଉଦାସୀନ ମନେ !
ଅଥବା ବେଳାରେ ଶିଳେ ଶୋଇ ବନ୍ଧ କରି
ଭୁଲିଯିବି ଜଗତର ଦଶା-ବିଷବଶ;
ବହୁରବ ନୁହେଁ ମୁହିଁ ଜୀବ ସଂସାରର
ମୁଁ ଏକ ମଳୟଧାରା, ଧ୍ୱନି କୋଳାହଳର ।

୨

ଜନତା ନୟନ ଆଗେ ଆପଣା ପ୍ରତିମା
କେଉଁମତେ ହେଲେ ଥୋଇ, ଆପଣା ମହିମା
ଦେଖାଇବା ଲାଗି ଯେତୁ ଧରନ୍ତି ଜୀବନ
ମୁଁ ତ ସେ ଗୋଷ୍ଠୀର ଅଙ୍ଗ ନୁହେ କଦାଚନ ।
ଜଗତର ଅଜାଣତେ ଆପଣା ସ୍ୱପନେ
କୁଟୀର ତୋଳିବା ଆଶା ପୋଷିଥିଲି ମନେ ।
ଜନତା ନୟନ ଆଗେ ଉଭା ହେବା ଆସି ।
ଦଶ ଜଣ ସଙ୍ଗ ଯୁଟି ଗୌରବ ମନାସି,

ଅଯୁକ୍ତର ସ୍ତୁତି, ଜନତାର କରତାଳି
ଏ ସବୁ ଲାଗି ମୁଁ କେବେ ନ ଥିଲି ତ ଖାଲି !
ଛୁଟି ପ୍ରତିକୂଳେ ଚଳାଇବା ଏ ଜୀବନ
ଜୀବନେ ଅଟେ ସେ ନିଷ୍ଠୁରତମ ନିର୍ଯ୍ୟାତନ ।
ଭାଙ୍ଗି ଦେଇ ମୋ-ସ୍ୱପନ-ନିଭୃତ-କୁଟୀର
ବିଧାତା, ଜୀବନ କିପାଁ କଲେ ମୋ ଅସ୍ଥିର ?

ଆଶାହୀନ, ଆଶ୍ରାହୀନ ଆଜ ପଥ ପରେ
ଛୁଟୁଥିବା ହୋଇ ମୁହିଁ ଜନନେହେ ଭୟ କରେ !
ଯାଏଁ ଚାଲି ସେହି ସ୍ଥାନେ ପାଇବି ନିସ୍ତାର
ନ ଥିବ ଯେଉଁଠି ଜୀବନର ଅତ୍ୟାଚାର ।

୩

ବୋଲିବେ କେ, ଛାଡ଼ି ମାନବର ସଙ୍ଗ ସୁଖ
ଯିବା କେଉଁ ଦେଶକୁ ମେ ହୋଇଣ ବିମୁଖ
ସଂସାରର କୋଳାହଳେ, ଜନତା-ଜଞ୍ଜାଳେ;
ଘୋର ଦୁର୍ବଳତା ଏ ଯେ କବି କୁମ୍ଭଠାରେ ।
ମାନବର ଦୁଃଖେ ସୁଖେ ମିଶାଇ ଜୀବନ
ଜୀବନ-ସମରେ କରି ସ୍ୱେଦ ବିସର୍ଜନ,
ଦଳିତ-ଦୁର୍ବଳ ବ୍ୟଥା ଅନୁଭବି ପ୍ରାଣେ
ସହି ଦମ୍ଭ-ମୂର୍ଖତାର କ୍ରୂର ଅପମାନେ,
ଦେଖାଅ ମୁକ୍ତିର ପଥ, ଚିନ୍ତା ଉଦ୍ଧାରର
ପଛେ ଯେ ଆସିବେ ବାଟ କାଢ଼ି ତାହାଙ୍କର ।

୪

ଏକା ଏକା ଆଜ ଏ ଯେ କାନନ-ପ୍ରୟାଣ
ଦେଖାଏ କି ତାହା କବି-ଦୁର୍ବଳ ପରାଣ ?
ଧରଣୀରେ ଚିରନ୍ତନ ଲାଗିଛି ସମର
ଯାହାଲାଗି, ତାହା ଅତି ଅଜଣ୍ଟିତକର ।
କାଞ୍ଚନର ବଞ୍ଚନାରେ ମୋହିତ ଜଗତ
ତାହାରି ତୁଳାରେ କଏ ଲଘୁ, କେ ମହତ ।
ମୋର କରପୁଟେ ତାହା ନାହିଁ ଥିଲା ଯେଣୁ,
ଚୁମ୍ବିବାକୁ ହେଲା ମତେ ମୂର୍ଖପଦ-ରେଣୁ ।

କାଞ୍ଚନ ସମରେ ପଶି ଜୀବନ ଲୁଣ୍ଠିତ
କରିବାକୁ ନାହିଁ ମୋର ମାନସ କଳ୍ପିତ ।
ଅଥବା ପ୍ରାଧାନ୍ୟ-ପକ୍ଷ, ଯାହା କାଳ-ଶିରେ
ଉଠି, ଫାଟି ଚିରଲଗି ନଭେ ଅବସରେ,
ତା ଲଗି ପାଗଳ ପରି ଝସ୍ପିବା ଜୀବନ
ଅନୁମୋଦନ କି କରେ କେବେ କବିମନ ?
ତେଣୁ ଆଜ ସେ ଆଡ଼ୁ ମୋ ବଦନ ଫେରାଇ,
ସୁଦୂର ସାଗର ତୀର ବେଳାବନେ କାହିଁ,
ଗମନେ ବାସନା ମମ ଦୁଃଖବ୍ୟଥା ସହ,
ଜୀବନ-ଗଞ୍ଜଣା ଯେଣୁ ହେଲାଣି ଦୁର୍ବହ ।
କୋଟି କୋଟି ନରନାରୀ ମତ୍ତ ଯାହା ଲଗି
କବିଚିତ୍ତ ହୋଇ ଯାଏ ତହିଁରେ ବିରାଗୀ,
ପଛ କରି ତାକୁ, ଚଳେ ଦରିଦ୍ର କୁଟୀରେ
ଘୁରୁ ବୋଲି ନିନ୍ଦା କିଏ କରିବ କବିରେ ?
ଜନତାରେ ରହି ଅବା ବଜାନ୍ତୁ ମୋ ବେଣୁ
ବ୍ୟଥାର ଅଶ୍ରୁରେ ଓଦା କରି ପଥରେଣୁ,
ଜନତା ହସିବ ମତେ ଅଙ୍ଗୁଳି ଦେଖାଇ
ନାରୀ ପରି ଏ ଲୋକଟା କାନ୍ଦୁଛି କିପାଇଁ ?
କେବେ ହେଲେ ଜାଣନ୍ତା କି ଏ ମୂର୍ଖ ଜନତା
କାନ୍ଦିବାକୁ ଜଗତରେ ଅଛି ଏତେ ବ୍ୟଥା ।
ଅଥବା ବୀଣାରେ ଦେବି ରୁଦ୍ର ଅଭିଶାପ
ସମାଜ-ସଂହାରକାରୀ ବିପ୍ଳବ-ଆଳାପ,
କରିବି ବିନାଶ କରି ଧନୀର ସଂସାର
ଦରିଦ୍ର ସଂସାର ଲଗି କାଠ ନୂଆ ଗାର ।

କିନ୍ତୁ ଫଳ ସେଇ କଥା—ଦଳେ ଅତ୍ୟାଗ୍ରହୀ
ଚଢ଼ି ଆଜି ଦଳେ ମାତ୍ର ଆଣିବା ଦକାର ।
ଦଳେ ଲୋକ ସବୁବେଳେ ଥିବେ ଜଗତରେ
ଉଠିବେ ଯେ ମାଡ଼ି ଦଳ ଆନକୁ ଉପରେ;
ତାଙ୍କ ପଦତଳେ ଥିବେ ମୋପରି ଅଯୁକ୍ତ
ମୁଣ୍ଡପରେ ଉଡୁଥିବ ପତାକା ବହୁତ ।

ପ୍ରେମ-ପ୍ରୀତି-ଫ୍ରେଟରନିଟି-ସାମ୍ୟ-ସ୍ୱାଧୀନତା,
ଆସାଲେ ସେ ଗୋଷ୍ଠୀ ଦଳେ ଡକାଇତଙ୍କର ।
ତେଣୁ ଆଜ ମୋ ବାସନା, ଯାଇ ଦୂର ବନେ
ତୃଣ-ଶେଯେ ବସି ନିଜ ସଦ୍ଧ ନିକାଞ୍ଚନେ
ରଚିବ ଗାଇବ ଗୀତ ଇଚ୍ଛା ଅନୁସର
ବଚନ ରଚିବ ତପ୍ତ ଶ୍ଳୋକରେ ଭର ।
ଥିବ ଯନ୍ତ୍ର ସେ ଗୀତରେ ଦଗ୍ଧ ହାହାକାର
ମୋ ପ୍ରାଣ ବ୍ୟର୍ଥତାମୟ ତିକ୍ତ ଅଶ୍ରୁଧାର,
ମୋ ପରି ପରାସ୍ତ ଯେତେ ଜୀବନ-ସଂଗ୍ରାମେ
ବାଜିପାରେ ମୋ ସଙ୍ଗୀତ କାଳେ ତାଙ୍କ ପ୍ରାଣେ ।
ହେଉ ତାହା ସିଦ୍ଧି ଏକ, ଏ ବ୍ୟର୍ଥ ଜୀବନେ,
ଭଗ୍ନ ବୃକ୍ଷ ଲାଗୁ ହେଲେ କାହାର ଇନ୍ଧନେ ।



# ଆତତାୟୀ

ଅର୍ଦ୍ଧରାତ୍ରି !—
ଅଶ୍ରୁଫେନ ଆରମ୍ଭିଛି ମୃତ୍ୟୁନିଦ୍ରା ତାର,
କ୍ରମେ ଜଡ଼ ଦେହେ ମୋର, ହୋଇଆସେ, ଶୋଣିତର ଧାର ।

ଆଜ ଡେରି ଶୁଭ ନୁହେଁ, ଶେଷ କରେ ମୋ ଦୁଃଖ-ଜୀବନ,
ଜୀବନେ ଯେ ପ୍ରିୟ ମମ, ଦେବି ତାଙ୍କୁ ନିଷ୍ଠୁର ମରଣ ।

ଶୋଇଛନ୍ତି ମାତା ପୁତ୍ର !—ଧୀରେ ଜଳେ କିରୋସିନି ଦୀପ,
ଅଧା ଅଧା ମୁଖ ତାଙ୍କ, ଦେଖାଯାଏ ଦୁଆର ସମୀପ—

ଦୁଆର ଦେଇଛି କିଳି, ବନ୍ଦ ସବୁ ଭିତର ବାହାର,
କେହି ଶୁଣି ନ ପାରିବ, କଲେ କେହି ଭିତରୁ ଚିତ୍କାର ।

ଦୁହିଙ୍କୁ ଦେଇଛି ନିଶା ପାନୀୟରେ, ଶାଠ୍ୟ କରି ପଣା,
କ୍ଷୁଧା-ଅବସନ୍ନ ଦେହେ ଲାଗିଅଛି ନିଦ୍ରାର ପ୍ରେରଣା ।

ତୀକ୍ଷ୍ଣ କ୍ଷୁର ହାତେ ମୋର—ଆଶା କରେ ଏକ ଏକ ଚୋଟେ
ଶେଷ ମୁ କରିବି ତାଙ୍କୁ, ଦୁଃଖ ଶେଷ ହୋଇବ ମିନଟେ ।

କଅଣ କହିବେ ଲୋକେ ? କହନ୍ତୁ ନା କହିବେ ଯା ଆସେ
ମୁଁ ଜାଣେ ମୁଁ ଆତତାୟୀ, ଏମାନଙ୍କ କଲ୍ୟାଣ ସକାଶେ ।

ଏଇ ଯେ ଶୋଇଛି ନାରୀ—ରୂପସୀ ସେ ଅଳପବୟସୀ,
ଦାରିଦ୍ର୍ୟ କରିଛି ତାକୁ ମ୍ଳାନା, ରୁଗ୍‌ଣା, ରୁକ୍ଷା, ବର୍ଷୀୟସୀ ।

ଭଗବାନ କଷ୍ଟ ଆସି ତାକୁ କେତେ କରିଛି ପ୍ରଣୟ
ପ୍ରଣୟେ ପୋଡ଼ିବା ଦୁହେଁ ଦେଖିଥିବେ ସେ କରୁଣାମୟ ।

ରଖିବାକୁ ତାହାକୁ ମୁଁ ପ୍ରାଣି-ଯୋଗ୍ୟ ବଞ୍ଚିବା ସୁଖରେ
ଗୋଟିଏ କୁଟୀର ଦେଇ, ରଖି ତାରେ ଅଭାବ ଊର୍ଦ୍ଧ୍ୱରେ;
ଦୁର୍ଭାଗ୍ୟ ସଙ୍ଗରେ ମୁଷ୍ଟି ଲଢ଼ି ଲଢ଼ି ହୋଇଲି ଜଖମ
ତାକୁଇ ଖାଇଲି ବେଶୀ, ଯେତେ ମୋର ବ୍ୟର୍ଥତା-ସରମ ।

ଧାଇଁବାର ବାର ଦ୍ୱାରେ, ମାଗି ବାର ଜଣେ ହାତ ପାତ
ଫେରିବାର ମୁଣ୍ଡେ ବୋଝ, ବ୍ୟର୍ଥତାର ଲାଞ୍ଛନା ନହାତ;
ପ୍ରତ୍ୟହ ବଞ୍ଚନା 'କାଲି-ନ-ହେବ'ର ଭୟ ସଙ୍ଗେ ଲଢ଼ି
ଘୋର ଘୃଣ ମୋ ଜୀବନ ତା ଆଗରେ ଯାଇଅଛି ସଢ଼ି ।

ସକଳ ଆଶାର ଦ୍ୱାରେ ହାତ ମାରି ଫେରିଛି ନସ୍ୱଶେ
ଆଶାର କୁହୁକୁ ତାକୁ ମୁକ୍ତି ଦେବ ଆଜ ଅବଶେଷେ ।

ତା ପାଶେ ଶୋଇଛି ପୁତ୍ର !—ଗର୍ବ ଏହି ସର୍ବ ଜନମର
ମୋର ପ୍ରତିବିମ୍ବ ପରି ଯେହ୍ଲେ ଢଂଶ ତା କ୍ଷୁଦ୍ର ଶରୀର ।

କର୍ମକ୍ଳାନ୍ତ ଲାଞ୍ଛିତ ମୁଁ ଫେରିଆସେ ଯେବେ ଗୃହଦ୍ୱାରେ
ଛୁଟା ଥାଏ ସ୍ନେହୀ ଶିଶୁ ମୋହଠାରୁ ଆଶ୍ଳେଷ ଆଶାରେ ।

ଯେତେ ଯେବେ ଆସେ ପାଶେ, କେଇ ଦେଇ ଆଶ୍ଳେଷ ଚୁମ୍ବନ
ପ୍ରାଣ ମୋର ଶାନ୍ତ ନୁହେଁ ! କଣ୍ଠେ ତାର ଦରୋଟି ବଚନ ।

ଛୋଟ ଛୋଟ ମୂଢ଼ ପ୍ରଶ୍ନ,ଅକାରଣ ହାସ୍ୟ ଅଶ୍ରୁ ଜଳ
ଥିଲା ଆମ ଦୁଃଖ ଘରେ ଏକମାତ୍ର ଆନନ୍ଦ-ସମ୍ବଳ ।

ସେହି ମୋ ଭକତଙ୍କୁ ଜାତ ସନ୍ତାନରେ କରିବ ବିନାଶ,
ଭଗବାନ ସମ୍ମୁଖରେ ଠିଆ ହୋଇ କହିବ ନିର୍ଦ୍ଦୋଷ ।

ସବୁ ଶେଷ ହେବା ଆଗୁଁ ଥରେ ପୁଚ୍ଛ କରେ ଭଗବାନ
ମିଥ୍ୟା କି ବେଦେ ଶାସ୍ତ୍ରେ ହୋଉଛି ଯା ତବ ଗୁଣ ଗାନ ?

ଶୁଣିଛି ଭକତେ ତୋତେ ବର୍ଣ୍ଣିବାର କରୁଣା- ବାରିଧି
କରୁଣାର କଣା ହେଲେ ନ ପାଇଛି ମୁହିଁ ଏ ଅବଧି ।

ପେଟ ଲାଗି ଯାହାଙ୍କର ନାହିଁ ଚିନ୍ତା ସେ ତୁମ ସ୍ତାବକ
କେବଳ ତୋଳାନ୍ତି ସେହି ଯେତେ ଧର୍ମୀ, ଅତ୍ୟାଗ୍ରହୀ, ଠକ ।

ମତେ ତ ଦେଇନା କିଛି, ଡାକଲେହେଁ ଯୋଡ଼ହସ୍ତ ହୋଇ
ସବୁ ଚେଷ୍ଟା ଭାଙ୍ଗି ମୋର କରିଅଛ ନିତ୍ୟ ଧୂଳିଶାୟୀ ।
କୀଟେ ଖାଏ ଭେକ, ଭେକେ ଗିଳେ ସର୍ପ, ମାରେ ତା ମୟୂର,
ମୟୂରେ ମନୁଷ୍ୟ ଖାଏ—ପନ୍ଥା ଏହି ତୋ ପୁଣ୍ୟ ସୃଷ୍ଟିର ।
ମନୁଷ୍ୟ-ସମାଜେ ଚଳେ ସେହି ନୀତି—ଜଣେ ଆର ଜଣେ
ଧୂଳିଶାୟୀ କରି ତାର ନେଲେ ସବୁ, ପୌରୁଷ ମଣେ ।
କାହାର ଅନିଷ୍ଟ ମନେ ଚିନ୍ତା ମଧ୍ୟ କରିନି ଜୀବନେ
ତଥାପି ଗୋଡ଼ାନ୍ତି ଶ୍ୱାନେ ପଛେ ମୋର କହ କି କାରଣେ ?

ଦୟା କରୁଣାରେ ଭର ବିଧାତାର ଏ ଜଗତ ପର ।
ଭିକ୍ଷା ଦେବା ଥାଉ ତେଣେ, ଭଙ୍ଗ ହୁଏ ମୋ ଅନ୍ନ ଖପର ।

କା ଆଗେ କହିବ ଦୁଃଖ ? ଅନ୍ୟାୟେ ତ ଗଢ଼ା ଏ ସଂସାର
କିଏ ସେ ପୋଛିବ ଅଶ୍ରୁ ? ଅଶ୍ରୁରେ ତ ଆନନ୍ଦ ସ୍ରଷ୍ଟାର ।

ଉପାୟ ନ ଦେଖି ଆଉ କରିବାକୁ ଦୁଃଖ ଅବସାନ,
ଘଷି ଘଷି ତୀକ୍ଷ୍ଣ ଛୁରିରେ ଦେଇଅଛି ଆଜ ମୁଁ ଶାଣ,

କହୁଥିବେ କେ ଧର୍ମବକ, ଦୁଃଖ ଭୋଗ ପାପ ଫଳ ସିନା,
ବେଶ୍ କଥା—ପାପ ମୋର କେହ୍ନଥିଲେ ବୁଝାଇ ଦେଉ ନା !

ଜନ୍ମରୁ ଆକାଶ ତଳେ ନଇଁଥରେ ହୋଇ ଯୋଡ଼ହସ୍ତ,
ଡାକୁଛି ମୁଁ ବାରମ୍ବାର, "ଭଗବାନ ବୁଝାଇ ସମସ୍ତ ।

କହ କନା କବା ପାପେ ଜୀବନକୁ କଲ ଖଣ୍ଡ ଖଣ୍ଡ
ପ୍ରବଞ୍ଚନ କଲ ମୋର ମଧୁସ୍ୱପ୍ନ, ସାଧୁ-ଶ୍ରମ ପଣ୍ଡ ।"

ଉତ୍ତର ପାଇଲି କାହିଁ ? ଗଣ୍ଡ ଅଶ୍ରୁ ବୋହିଯାଏ ଶୁଖି
ଅନାଦୃତ ଶିଶୁ ପରି ଧରେ ଶଯ୍ୟା ମୁଁ ଆଜନ୍ମଦୁଃଖୀ ।

ଭାଗ୍ୟଧର ଯେଉଁସବୁ, ତାଙ୍କ କଥା କର ଆଲୋଚନା,
ପାଇନ କି ମୋ ଜୀବନୁଁ ତାଙ୍କଠାରେ ବେଶୀ ପୁଣ୍ୟକଣା ।

ଆଜ ସବୁ—ହସ୍ତ ମୋର, ଶିଥିଳିତ ହୋଇ ଆସିଲାଣି
ଛିଗିଛିବ ସବୁ ଯଦି ନିଦ୍ରାଭଙ୍ଗ ହୁଏ କାର ପୁଣି ।

ଜୀବନର ମାୟା କଉ—ହୁଏ ତ ଏ କହିବେ ଚକ୍ଷାର
ଦୁଃଖେ ଲାଞ୍ଛନାରେ ମଧ୍ୟ ଜୀଇବାକୁ କହିବେ ବିଗ୍ଧର ।

ଅନଚ୍ଛକ ରୋଗୀ ମୁଖେ ବଳେ ଦେବା ପରି ଅଉଷଧ
ଏ ଦୁଷ୍ଟଙ୍କୁ ଦେବ ଆଜ ନିର୍ବିକାରେ ମୃତ୍ୟୁ ଆଶୀର୍ବାଦ ।

ବଞ୍ଚିବାର ଲଜ୍ଜା ଦୁଃଖୁ, ଆଶ୍ରା ହଏ ଜାବେ ଯେ ମରଣ
ସିଏ ପୁଣି ପାପ ?—ସେ ତ ଦୁଃଖିଜନ ପରମ ଶରଣ !

ଆସ ପ୍ରିୟେ, ଆସ ବନ୍ଧୁ—ଅନ୍ତ ସ୍ନେହ ବଧିବ ଦୁହିଁରେ
ବଣ୍ଡିକେ ତ ପାରହେବା ଦୁଃଖମୟ ଜୀବନ-ନଦୀରେ ।

ଜୀବନେ ପାଇଲେ ଯାହା ପାନତାର ବଷାକ୍ତ ତକ୍ତତା
ଜୀବନର ଆରପଟେ ଦେଖିବାନା, କବା ଅଭିଜ୍ଞତା ।

ଏଇ ବେଲ ଖୁର ଧାର, ଶିଶୁ କେକେ-କେଶ୍; କେଶ୍; କେଶ୍
ସାବାସ ଶାଆଣ !— କଲ ଜଘନ୍ୟତା ଦଣ୍ଡକରେ ଶେଷ;
ସୁନ୍ଦର ତା ଆଖି ଦୁଇ ଫୁଟିଆସେ—ନାଚେ ଛିନ୍ନ ଶିର
ନ ବୁଝିବ ସେ ଆଉ ମୁଁ—ଶେଷ କରେଁ ଦୁଃଖ ଜନମର !
ଚୁମ୍ବିଛୁ ଏ ସ୍ୱର୍ଣ୍ଣ ଗଲା ଆଗ ପଛ କେତେ ଲକ୍ଷ ବାର
ଏ ପାଖ ସେ ପାଖ ଗଣ୍ଡ, ନମ୍ର ଓଷ୍ଠ—ସୁକୋମଳ ଧାର ।
ଅନାବୃତ ବକ୍ଷ ଏହୁ – କତ୍ୟ ଅଭିସ୍ନାତ ମୋ ଚୁମ୍ବନେ,
ବେଗେ ବେଗେ କ୍ଷୀଣ ଆଜ, ଡ଼ଳପଡେ କଙ୍କାଳର କୋଣେ ।
ଖାଲି ସ୍ନେହ କେତେ ଆଉ ବଞ୍ଚାଇବ ହତଭାଗିମାରେ
ସାମାନ୍ୟ କୁଟୀର ଖଣ୍ଡେ ନାହିଁ ତାର ବସ୍ତ୍ର ମଧ୍ୟରେ ।
ଭବିଷ୍ୟେ ବା ଆଶା କାହିଁ ?—ଥାଉ,ଥାଉ କେକେ ଦେଇ ଖୁର
ସକଳ ଘନତା ତାର କରିଦିଏ କ୍ଷଣକରେ ଦୂର ।

ସନ୍ତାନ—ଶୋଣିତ-ରକ୍ତ ଏଇ ଖୁର ଜନମର ଗଳେ
ବସାଇଲି ! ଯାଇଛୁ ତ !—କେଶ୍ ଯାଏ !—ଶେଷ ଏକା ଥରେ ।
ଯାଅ ଖୁର—ବେଲ ଫିଙ୍ଗି—ଦୁହିଙ୍କର ଶବର ମଝିରେ
ଶୋଇ ଆଲିଙ୍ଗନେ ଧରି, ଠିଆ ହେବ ମରଣର ଘରେ ।



# ନବଜନନୀ

ହେ ନବଜନମା,
ସନ୍ତାନ-ଜନକ କରେ
ବିସ୍ମୟିତ ଭକ୍ତିଭରେ
ତୋ ପଦେ ପ୍ରଣାମ ପୁଣି ପୁଣି !

କାଲି ଥିଲୁ ବିମୁକ୍ତ ହରିଣୀ
ଯୌବନ-ବସନ୍ତ ବନେ
ଧାଇଁ ବୁଲି ଆନ ମନେ,
ହୋଇଥିଲୁ ସ୍ୱପନ-ସ୍ୱୈରିଣୀ !

ଆଜ ଦେଖେ ବ୍ୟସ୍ତ ଜଞ୍ଜାଳରେ,
ଧରିଣଛୁ ନବ ମନୁଷ୍ୟରେ
କଲ୍ୟାଣମସ୍ତ ସେ ବକ୍ଷେ
ସ୍ତନ୍ୟ ଦେଇ, ଭୃଷ୍ଟି ଚକ୍ଷେ
ପରମ କରୁଣାଭରେ,
ଚୁମ୍ବି ନବ ବାତ୍ସଲ୍ୟରେ,

ହୋଇଅଛ ନବୀନ ଜନମୀ !
ସେହି ସେ କୋମଳ ବକ୍ଷ
ଆଶ୍ରା ମୁକ୍ତି ଖୋଜିଅଛି ସର୍ବ୍ବ,
ଛନ୍ଦି ପୁଣି ସଂଚୟନ
ଥିଲ କରି ଆୟୋଜନ
ନବାଗତ ଅଭ୍ୟର୍ଥନା ପାଇଁ !
ହେ ନାରୀ ତୁ ଯୁଗେ ଯୁଗେ
ତୋର ସେହି ବକ୍ଷଯୁଗେ
ପ୍ରେୟସୀ, ପ୍ରସବୀ ବେଶେ
ସ୍ନେହ ଢାଳି ନିର୍ବିଶେଷେ
ମାନବରେ ଆଣିଛୁ ବଢ଼ାଇ !
କାହୁଁ ତୁ ଆଣିଲୁ ଏହି
ନବଜାତ ଜୀବନରତନେ ?
ନିଜ ଦେହେ ମାୟାବିନୀ
କେମନ୍ତେ ପ୍ରତିମା ଦେଲି
ଅନ୍ତରର ଗୁପତ ସ୍ୱପନେ !
ମହାମୟୀ, ହେ କ୍ଷୁଦ୍ର ଧରଣି,
କ୍ଷୁଦ୍ର ଦେହ ଲତା ପରେ
ଫୁଟାଇଲ ଜୀବନ ସୁମନେ ।
ଜନୟିତ୍ରୀ ମାନବ ଜାତିର,
ହେ ନାରୀ, କରଇ ନମସ୍କାର !
ଗବାକ୍ଷେ ଯେ ଦିନ ମତେ କଟାକ୍ଷେ ଗୁହିଁଲ,
ଆଲିଙ୍ଗନେ ପାଶେ ବସାଇଲ,
ଅଲକ୍ଷେ ଥିଲ କି ଏ ବସ୍ତୁର ?

ନ ଥିଲେ ଯେ ଜନନ ପିପାସା
ମେଣ୍ଟିବାକୁ, ମୋର ପଦତଳେ,
ଦେଲ ଦେହ ମନ ସମସ୍ତରେ,
ସୃଜନର ପିପାସାରେ
ମୋ ଆଶ୍ଳେଷେ ଆପଣାରେ
ଏକୁଁ କଲ ଯୁଗଳ ପ୍ରକାର !
ହେ ପ୍ରକୃତି ମାୟାବନ,
ହେ ଧରଣି, ମାନବ-ଜନନ,
ହେ ନାରୀ ଏକାନ୍ତ-ସଖୀ, ପୁରୁଷର ନିତ୍ୟ ସଂଗୀବନୀ
ତୋ ପଦେ ତୋ ସ୍ପର୍ଶ କରେ
ବାରମ୍ବାର ଭକ୍ତି ନମସ୍କାର !



# ନାରୀର ଅଧିକାର

ପ୍ରିୟ ମମ, କହ ଏ ଅନ୍ୟାୟ,
ଭସିଯାଅ ପୁରୁଣା କଥାରେ,
ମୋ ଜୀବନ-ସାର୍ଥକତା ଖାଲି,
ଦାସୀ ପରି ତୁମରି ସେବାରେ ।
ମାନବର ଜନନୀ ମୁଁ ନାରୀ,
ଜନନୀ ମୁଁ ତମ ସନ୍ତତିର,
ମାଆ ବୋଲି ପୂଜା ଯେ ପାଇବ,
ତା ଜୀବନ ହୋଇବ ଦାସୀର ?
କହିଥିଲ ପ୍ରଥମ ମିଳନେ,
ହୃଦୟର ରାଣୀ ବୋଲି ମୋତେ
ସେ କି ମୋର ଭୋଗ-ଲାଳସାତେ,
ପଞ୍ଚଜନ ମନ୍ଦିରା ଉନ୍ମତ୍ତେ ?
ନାରୀର କି ଶ୍ରେଷ୍ଠ ଆତ୍ମା କିଛି,
ରୂପ ଏହି ଚରମ-ସମ୍ବଳ ?
ଆମର କି ସିଦ୍ଧି ବାଣ୍ଟିବାରେ,
କୁତ୍ସିତ ଏ ଶରୀର ମାଂସର ?

ମାନବର ମାଆ ଠାରୁ ତମେ
ଅଛ ବେଶୀ ଆଶା କର ନାହିଁ ?
ଜନ୍ମ ଆମ, ତମ ପଦତଳେ
ଦାସୀ ହେବ ଚିର ସେବା ପାଇଁ ?
ତମଠୁ ମୁଁ ବଡ଼ ଆଶା କରେ,
ପୁରୁଷରେ ଅଛ ନୂଆ ପ୍ରେମ୍,
ହୃଦୟର ରାଣୀ ଯେ ତାହାକୁ
ନ୍ୟାଯ୍ୟ ତାର ଅଧିକାର ଦିଅ ।
ତମର ଯେ ଦାସୀ ମୁଁ ସତରେ,
ସେ କଥା କି ଅଣା ହେ ମତେ,
ତମ ହୃଦରାଣୀ ମୁଁ ଯେ କନ୍ତୁ,
ଦେଖାଇବ ଜଗତେ କେମନ୍ତେ ?
ଜ୍ଞାନେ ମତେ କର ଗଣ୍ଡପୁରୀ
କରମରେ ଶିଖା କଉଶଳ,
ଧରମରେ କର ମତେ ସାଥୀ,
ଭକତିରେ କର ଝଲମଲ
ତେବେ ସିନା ଜୀବନ-ପଥରେ
ହେବ ତବ ସୁଯୋଗ୍ୟ-ସଙ୍ଗିନୀ,
ଦୁଃଖେ ମାତା, ରତି ଅବସରେ
ଦାରା କର୍ମେ ସହଧରମିଣୀ
ଖାଲି ଯଦି ଆଶି ରଖ ପ୍ରିୟ;
ରୂପ ଏଇ ନାରୀ ଦେହଟାରେ
ନରକର ଦ୍ୱାର ବୋଲି କହିଣ
... ଦିନେ ହୋଇବ ବିକାରେ ।

ମାଟି ଦେହେ ଦେଖାକୁ ହେ ଦେଖ,
ଶ୍ରଦ୍ଧା ବଢ଼ଅ ଜଗଜ୍ଜନମାରେ,
ଶକ୍ତି ରୂପେ ଜଣ୍ଡ ହେବ ନାଶ,
ତୋ ଦକ୍ଷିଣ କର ସନ୍ନିଧିରେ ।
ଦୁହେଁ ସିନା ହୋଇଲେ ସମାନ,
ସହଯୋଗ ହେବ ସୁଖକର,
ଗୃହବାସୀ କର ତ ରଖିଲ,
ଯୁଦ୍ଧେ କିଏ ଯୋଗାଇବ ଶର ?
ଚଳାଇବା ନ ଶିଖାଅ ସଢ
ହେବୁ ଆମେ ତମ କାନ୍ଧ ଭାର,
ଚଳାଇବା ଶିଖାଇଲେ ଆମେ
ଯୁଦ୍ଧେ ନେବୁ ତମ ତରବାର ।
କେବଳ ମୁଁ ନୁହଇ ରମଣୀ
ନାରୀ ମୁଁ ଯେ ନରର ସମାନ,
ରତି ରୂପେ ଦେବ ତାକୁ ସୁଖ,
ରାଣୀ ରୂପେ ଦେବ ମୁଁ ସମ୍ମାନ !
ମାଆ ହୋଇ ଜଳତରୁ କାଢ଼ି
ଜଗାଇବ ବଂଶ ପୁଣି ତାର
କହ କେହ୍ନେ ହେ ପୁରୁଷ-ପ୍ରିୟ,
ଗୃହଦାସୀ ହୋଇବ ଏଥର ?
ଜ୍ଞାନେ ଗୁଣେ ହୋଇ ଗରୀୟସୀ
କରିଲେ ମୁଁ ତବ ଦାସୀ ପଣ,
ଏହଠାରୁ ମହତ୍ତର ନର,
ହୋଇବ କି କହେ ହେ ଆପଣ ?

———

## ଅପଣ୍ୟ ପ୍ରେମ

ବହୁ ଜନ ହେଲେ ବହୁ ପ୍ରଥମ-ଜୀବନେ,
ଦେଖାଇଲେ ପ୍ରଣୟର ଗଭୀର ମମତା,
ସେ ଦାନ-ପ୍ରମତ୍ତ, ଭାବି ଧନ୍ୟ ମନେ ମନେ
ଜପଦ୍ଧାସେ ଭୁଲିଥିଲି ପ୍ରଭୁ, ତବ ସତ୍ତା ।

ତମେ ମୁଁ ଜାଣୁଛି ଏବେ ସେ ଦାନର ତଳେ
ଥିଲା ଓତପ୍ରୋତେ ରହି ସୂକ୍ଷ୍ମ ଅହଂକାର
ଏକ କରେ ଦେଇ, ନେବା-ଆଶା ଆନ କରେ
ମମତା-ସଂଗ୍ରହ ମାତ୍ର ବନ୍ଧନ—ଦଗ୍ରର ।

କଳିତ ସେ ପକ୍ଷଯୁକ୍ତ, ସ୍ୱପ୍ନ-ବିହାୟସେ
ଯା ଦେଇ ମୁଁ ଉଡ଼ୁଥିଲି ଆନନ୍ଦେ ସେ କାଳେ,
ପୀଡ଼ା ଆଜ ସର୍ବାଙ୍ଗରେ ଶୃଙ୍ଖଳ ପରଶେ,
ପୀଡ଼ିତ ମୁଁ ସେ ପ୍ରାଚୀନ ପ୍ରଣୟର ଭାରେ ।

ତବ ଆତ୍ମା ଖୋଜେ ଆଜ ସେହି ସେ ପ୍ରଣୟ
ନାହିଁ ଯହିଁ ବିପଣୀର ପଣ୍ୟ ବିନିମୟ ।



# ଅଦାନ

ମନେ କି ରଖିଛ ନାଥ କେତେ ସେ ଭର୍ତ୍ସନା,
କେତେ ନିନ୍ଦା, ଉପହାସ, ତାଚ୍ଛଲ୍ୟ, ବିରକ୍ତି
ଫିଙ୍ଗିଛି ମୁଁ ତବ ମାଥେ, ଦୂରେଇ ଅର୍ଚ୍ଚନା,
ବ୍ୟର୍ଥ ହେଉଁ ମମ ଶ୍ରେଷ୍ଠ ଶ୍ରେଷ୍ଠ ଅନୁରକ୍ତି ?

ଶିଶୁ ଯେହ୍ନେ ଖେଳପନ୍ତୁ କାଠିଖୁଣ୍ଟା ପାଇଁ
କ୍ଷଣିକର ଲଗି ତେହ୍ନେ ହେଉଛି ହେ ନାଥ;
ହସୁଥିବ ପଛେ ତମେ ଅନ୍ତରାଳେ ଥାଇ
ନୀରବରେ ସହି ମୋର ତିରସ୍କାର-ଘାତ !

ଆଜି କିନ୍ତୁ ଜାଣୁଛି ମୁଁ ହେ, କଲ୍ୟାଣମୟ,
ରଖିଥାଅ ଶୁଭ-ବୀଜ ଘୋର ବହ୍ନିଭିତରେ,
ଜ୍ଞାନପାଇଁ ସୃଜିଅଛ ପ୍ରମାଦ, ସନ୍ଦେହ
ମିଳନ-ଆସ୍ୱାଦ ଥାଏ ବିରହର ମାରେ ।

ଦାନ ପାଇଁ କରିଥାନ୍ତି ସ୍ତବନ ସମସ୍ତେ
ନ ଦେଇଛ ଯାହା, ତାହାପାଇଁ ମୁଁ ନମସ୍ତେ ।



# ଈଶ୍ୱର ସାଧାରଣ

ହେ କୋଟିଭୁବନେଶ୍ୱର, ଜ୍ଞାନୀ ଯୋଗୀ ଜନେ
ଜାଣେନା କି ରୂପ ତବ ଦେଖନ୍ତି ମନନେ,
ଜାଣୁଛି ଏତିକି ମାତ୍ର, ହେ ବିଶ୍ୱୋତ୍ତମ
କ୍ଷୁଦ୍ରେ, ସାଧାରଣେ ତବ ପ୍ରକାଶ ପରମ ।

ଅନନ୍ତ ସମୁଦ୍ର ଅବା ଉତ୍ତୁଙ୍ଗ ଭୂଧର,
ତହିଁକି କେବଳ ତବ ପ୍ରିୟ ଅଧିଷ୍ଠାନ ?
ଖାଲି କି ତାରକାମୟ ମହା ନୀଳାମ୍ବର,
ତବ ମହା ବିଭୂତିର ପ୍ରତୀକ ମହାନ ?

କହ କିନ୍ତୁ ଦେଖେ ନିତ୍ୟ, ହେ ମହାମହିମ
ତୁମରେ ଜନନୀ-ସ୍ନେହେ, ତନୟା ତନୟେ
ଶ୍ରେଷ୍ଠ ଫୁଲେ କି ପ୍ରକାଶ ତୁମର, ଅସୀମ,
ଆମ ନିତ୍ୟ-ହାସ୍ୟ-ଅଶ୍ରୁ ତମ କଥା କହେ ।

ବିଶ୍ୱଠୁ ବିରାଟ ସେହୁ କଲ୍ପନାର ପାରେ
'ମୁହିଁ ତାଙ୍କୁ ଜାଣେ' ବୋଲି ଘୋଷ କଣ୍ଠସ୍ୱରେ !

## ଉତ୍ପୀଡ଼ିତ ଈଶ୍ୱର

କବିର ଅନ୍ତର ତଳେ କେ ଯେସନ୍ତ ଉତ୍ତରେ
"ହେ ଶିଶୁ-ସ୍ୱଭାବ-କବି, କହୁ ଯେ ବୁଝନା
ମୋହର ଅଶ୍ରୁ ଯେ କୋଟି ନୟନରୁ ଝରେ
ସ୍ଥାବରେ, ଜଙ୍ଗମେ ଭାତେ ମୂର୍ତ୍ତି ଯେ ଯାତନା !

ତମେ ତ ଜାଣନା କବି, କ୍ଷୁଦ୍ରତମ କୀଟେ
କେ କାହିଁ ଅଜ୍ଞାତେ ଦଳେ ଦେଲେହେଁ କଷଣ
ତାହୁଁ ବେଦନା ଫୁଟି ମନ୍ତ୍ରେ ମୋର ତନ୍ତ୍ରେ,
କି ବୁଝିବ କି ମୋ ବ୍ୟଥା ନର-ନିର୍ଯ୍ୟାତନ !

ଛଷେ, ବେୟୋନେଟେ, ଗୁଳି, ଛୁରିକା, ଉପାସେ,
ଯେ ଜୀବ ଯେଉଁଠି ମରେ ଘୋର ନିର୍ଯ୍ୟାତନେ
ଅନ୍ୟାୟ ଯେ ଯହିଁ ସହେ ନେତକତ ଶ୍ୱାସେ,
ସବୁ ତା ଭୋଗେ ମୁଁ ମୋର ଦଗ୍ଧ ମରମେ ।

ସାର୍ବଭୌମ ମୋ ମରମ, ଜାଣ ତମେ କବି,
ରକ୍ତପାତେ ଧରା-ଦୁଃଖ ନାହିଁ ଅନୁଭବ ?"

———

# ସାମାନ୍ୟ ସଞ୍ଚୟ

ମୂର୍ଖ ନର ଅତି ଯତ୍ନେ ନିଜ ଇତିହାସ
କରେ ଲିପିବଦ୍ଧ; କ୍ଷୁଦ୍ର ତାର ଅହଂକାର
ଲଭେ ମୂଢ଼ ପରିତୋଷ, ଭବ ଅବକାଶ
ହେଲ ତାର ପଉରୁଷ । ହସେ ମହାକାଳ !

ହେ ଅନାଦି ମହାକାଳ, ଦନ୍ତେ ଦନ୍ତେ ତବ
କେତେ କୋଟି ସଭ୍ୟତାର ମରଣ-ଆସ୍ୱାଦ,
ତବ ସ୍କନ୍ଧେ କେତେ ବ୍ରହ୍ମାଣ୍ଡର ଶୁଷ୍କ ଶବ
ଅଦ୍ୟ-ମତ୍ତ ନର ନାହିଁ ରଖେ ସେ ସଂବାଦ !

ହେ ଶାଶ୍ୱତ, ତୁମ୍ଭର ଯେ ନାହିଁ ବର୍ତ୍ତମାନ,
ତୁମେ ଖାଲି ଭବିଷ୍ୟତ, ଅନାଦି ଅତୀତ,
ତୁମେ ଖାଲି ଘଟଣାର ସ୍ରୋତ ବହମାନ,
କହ କାହିଁ ରଖିବ ମୋ ସାମାନ୍ୟ ସଂଚିତ ?

ତମେ ଜାଣ ନଃସ୍ୱ ମୁହିଁ, କିଛି ମୋର ନାହିଁ,
ଖାଲି ଏକ ଅଶ୍ରୁ ବିନ୍ଦୁ, ଧରା-ଦୁଃଖ ପାଇଁ ।

---

## ଅଶ୍ରୁର ହିସାବ

ହେ ନାଥ ! ଦେଇଛ ଯାହା ଏତେ ଅକାଂତରେ,
ଶ୍ରେଷ୍ଠ ତହିଁ ଏ ଦୁଃଖୀର ତପ୍ତ ନେତ୍ର-ବାରି,
ସେହି ମୋର ଉପହାର ତୁମ୍ଭ ଶ୍ରୀଚରଣେ—
ହୃଦୟ-ମନ୍ଥନ ବ୍ୟଥା କରି ମୁକ୍ତା-ମାଳ ।

ଦରିଦ୍ର, ଅକ୍ଷମ, ପଙ୍ଗୁ, ମୂର୍ଖ, ଅଚତୁର
କାହାର କି ଉପକାର କଲି ଏ ଧରାରେ ?
ସ୍ଥାଣୁ ସମ ବସି ରହି ବିଶ୍ୱ-ବ୍ୟଥାତୁର,
ହେ ନାଥ ! ଢାଳିଛି ମାତ୍ର ଅଶ୍ରୁ ହାହାକାରେ ।

ସେ ଉଷ୍ଣ ଲୋତକେ ନିଜ ମରମ-ବେଦନା
ମିଶିଥାଏ ନାଥ—ମୁଁ ଯେ ନିଜେ ଅଭିଶପ୍ତ,
ତବ ପଦତଳେ ମୋର ସେହି ଉପାସନା
ତରଳ, ସ୍ୱଚ୍ଛନ୍ଦ ଅଶ୍ରୁ—ଅନାବିଳ, ତପ୍ତ ।

ସେ ଯେ ମୋର ମୁକ୍ତାଞ୍ଜଳି, ବେଦନା ଅମାପ
ପାଇବ କି କେବେ ତାର ହିସାବ-କିତାପ ?



# ଏକ ଓ ବହୁ

ନାନା ଧର୍ମ, ନାନା ଶାସ୍ତ୍ର, ନାନା ଦରଶନ
ପଢ଼ି ମାତ୍ର ଝଗଝାନ୍ତ କଲି ମୋର ଶିରେ,
କସ୍ତୁରିକା ମୃଗ ସମ ଭ୍ରାନ୍ତ ଅନ୍ୱେଷଣ
କରି ମୁଁ ଫେରିଛୁ ଶେଷେ ତୁମ୍ଭ ସନ୍ନିଧିରେ ।

ପଣ୍ଡିତମ୍ମନ୍ୟଙ୍କ ପରି ତର୍କେ ମୁଁ ମାତିଛୁ,
ତୁମେ ଅଛ, ଅବା ନାହିଁ, ଦେଖ ବା ନ ଦେଖ
ଆମ ଦୁଃଖ ଦୈନନ୍ଦିନ,—ନ ଜାଣିଲି କିଛି,
ଜାଣିଲି ମାତ୍ରକ ତୁମେ ଏକ ଓ ଅନେକ ।

ହେ ମହା ଏକକ, ନିଜେ କରିଛ ପ୍ରକାଶ
ଅଗଣିତ ଅନେକରେ, ତନ୍ତୁଁ ତାର ଯାଏ,
ନାନା ଛନ୍ଦେ, ନାନା ରୂପେ ନିତ୍ୟ ତୁମ୍ଭ ରାସ,
ସୁଖ ଦୁଃଖ ଦୁଇ ତାରେ ତବ ବୀଣା ଗାଏ ।

ମୁଗ୍ଧ ହୋଇ ସୃଷ୍ଟି-କାବ୍ୟ କରୁଁ ଅଧ୍ୟୟନ
ଫିଙ୍ଗିଲିଣି ବହୁ ଦିନୁଁ ତତ୍ତ୍ୱ-ବ୍ୟାକରଣ ।

———

## ଅଶ୍ରୁମୁକ୍ତା

ପ୍ରବାସେ ସ୍ୱଜନ-ବାସେ, ନିଶ୍ଚେଳ ସନ୍ଧ୍ୟାରେ
ବସି ଭାବୁଁ, ଖସି ପଡ଼େ ନେତ୍ରୁ ଅଶ୍ରୁଧାର,
ମନ-ପକ୍ଷୀ ଡେଣା ଟେକେ, ଯିବ ଦେଖି ତାରେ
ଲୁଚିଛି ଯେ ସାଜ ସୁଖ-ମାଞ୍ଜି ଗୋଟି ତାର

ଥିଲେ ପାଶେ ହୁଏ ଶକ୍ତ କଳହେ ଜୀବନ,
ପରସ୍ପରେ ଅଭିଯୋଗି 'ନିଷ୍ଠୁର' 'ନିର୍ମମ'
ସେହୁ ହେଲେ ଛଡ଼ାଛଡ଼ି, ବିଧୁର ଏ ମନ,
ସେବେ ଅପହୃତ-କ୍ରୀଡ଼ନକ-ଶିଶୁ ସମ ।

ପଣ୍ଡିତେ କହନ୍ତେ ଏହା 'ମାୟା' ବୋଲି ସିନା,
ତମ ଶାସ୍ତ୍ରେ ଭିନ୍ନ ଅର୍ଥ ହେବ ଅନ୍ତର୍ଯ୍ୟାମି,
ଏ ଜଗତେ ଅଶ୍ରୁ କାହିଁ ତମ ସ୍ପର୍ଶ ବିନା ?
ହରଷର ସ୍ରଷ୍ଟା ତମେ, ବେଦନାର ସ୍ୱାମୀ ।

ପ୍ରିୟ ଜନେ ସଁପିବାକୁ ଯୋଗ୍ୟ ଉପହାର
ଦେଇନା କି ଦାନହସ୍ତେ ଅଶ୍ରୁ-ମୋତି-ହାର ?

———

# ଗୁପ୍ତ ପ୍ରଣୟ

ଉଦ୍ୟାନେ, ଜନସଂଘେ, ସଂସାରଗହନେ
ତମେ ଆସି ମତେ କେବେ ନ ପକାଅ ଧନ୍ଦ,
କହିବେ ପାଗଳ ମତେ, ହସିବେ ସକଳେ
ଗୋପନେ ଭେଟିବ ତେଣୁ ପ୍ରଣୟ-ପସନ୍ଦ ।

ମୁଁ ଗୃହେ ଆସିବ ତମେ ଗଭୀର ନିଶୀଥେ
ହିଶାୟୁ ନ ଥିବେ, କାଳେ, ଶୁଣିବେ, ଦେଖିବେ,
ହୃଦ-ବଧୂ ଥିବ ଗୃହିଁ ଆଶଙ୍କିତ ଚିତ୍ତେ
କେଜାଣେ ତା ପ୍ରିୟ, ଦ୍ୱାର ଆସି ଆଘାତିବେ !

ଯଦ ଆସ, ଅନ୍ତୀଭୂତ ଆନନ୍ଦ-ସଲିଳେ
ନାହିଁ ସେ ପାରିବ ଦେଖି; ପରଶ ତମର
ଓଷ୍ଠ ତାଳୁ, କର ଗୃଳ ମସ୍ତକେ ସଧୀରେ,
କହିବ "ଆସିବ ପୁଣି" ପ୍ରାନ୍ତେ ଶ୍ରବଣର ।

ତମ ସାଥେ ଗୃହେ ଏହି ଗୋପନ ପ୍ରଣୟ
ପ୍ରକାଶ୍ୟରେ ତମ ସଙ୍ଗ ଚାଷ୍ଟିକା-ମୟ ।

———

# ଦର୍ଶନ-ଗୌରବ

ତୁମର ଆସିବା-ଯିବା ବାଟ ହେ ସମ୍ରାଟ
ଜନ ଦୃଷ୍ଟି-ଗୋଚର ପାଇଁ କରନ୍ତ କେ କେତେ
ଦେବାଳୟ, ମସଜିଦ୍, ପାନ୍ଥଶାଳା, ଘାଟ,
ଦାନ, ଧର୍ମ, ତୀର୍ଥ-ଯାତ୍ରା, ଯାର ଶକ୍ତି ଯେତେ ।

ଭିକାରି ମୁଁ, ଏଇମାତ୍ର ଲୋକ-ମୁଖୁଁ ଜାଣେ,
ଏହି ପଥେ ସମ୍ରାଟଙ୍କ ଗମନା ଗମନ,
ଇଚ୍ଛା ଭୁଲି ଠିଆ ହୁଏ ପଥେ ଏକ ସ୍ଥାନେ,
କପର ସମ୍ରାଟ, ଆହା, ହୁଅନ୍ତା ଦର୍ଶନ ।

ହେ କୋଟିଭୁବନପତି ନୁହେଁ ମୋ ବାସନା
ଅଟକବ ରଥ ତବ, ଅକିଞ୍ଚନ ପାଇଁ,
ତୁମେ ଯାଅ ଜନ ପଥେ, ମୋ ଆଢ଼େ ନ ଅନା,
ଭିକାରି କୁବେର ହେଉ ଅନାଇ ଅନାଇ ।

ପରମ ସୁଖଦ, ଖାଲି ରହିବା ସୁନ୍ଦରେ
ରହେନା, ରହୁଁ ସେ ମୋହପର କୁହୁଡିରେ ।

———

# ତୁମରି ଅହଂକାର

ନେଲ ସବୁ ଅହଂକାର ଅଶ୍ରୁରେ ଭସାଇ
କେଶେ ମୁଁ ନପାରି, ଅହଂମୟ ଏ ସଂସାରେ ?
ହେ ନାଥ, ନେଉଛ ମୋର ସମସ୍ତ ଛଡ଼ାଇ,
ନଃସ୍ୱର ଯେ ସ୍ଥାନ ନାହିଁ, ମାଟିର ଧରାରେ !

ଅନ୍ୟାୟ ତା ! ଏଥି ସଙ୍ଗେ କିଛୁ ପ୍ରତିଦାନ
ଛାଡ଼ିଯାଅ ଅବା, ନାଥ, ଏକ ଅହଂକାର;
ତୁମରି ସ୍ନେହର ଗର୍ବେ ବଞ୍ଚୁ ମୋର ପ୍ରାଣ,
ମୁକ୍ତା ହେଉ ତମଲାଗି ମୋର ଅଶ୍ରୁ-ଧାର ।

ହେ ପରମ ପ୍ରିୟ ମମ, ତୁମରି ପ୍ରଣୟ
ଏକାନ୍ତ ଭରସା ଆଜ, ଏକଇ ସମ୍ପଦ,
ସବ-ଭକ୍ତ ମୁହିଁ, ଆଜ, ତା'ଲାଗି ନିର୍ଭୟ,
ନ ନଥି ସେ ଖଇଦର ପବନ ଆନନ୍ଦ ।

ବଢ଼ାଅ ଏ ଅହଂକାର ଅଧିକୁଁ ଅଧିକ
ଅଶ୍ରୁ-ହାର ଢାଳି ଢାଳି ହେବ ମୁଁ ଯାଚକ ।

———

# କ୍ଷୁଦ୍ର ପ୍ରୀତି

ଜାଣେ ମୁଁ ଯେତେକ ତୁମ୍ଭେ ଜଗତ ବିପୁଳ,
ସ୍ୱଭାବତେ ଭଲ ପାଅ, କ୍ଷୁଦ୍ର, ନଗଣ୍ୟରେ
ଗମ୍ଭୀର ଅରଣ୍ୟେ ଯତ୍ନେ ଫୁଟୁ ଛୋଟ ଫୁଲ
ତୁମ୍ଭର ଜଗତ ସୂର୍ଯ୍ୟ ସେବା ତାର କରେ ।

ବାଟେ ଯାଉଁ ଗୋଟାଇଲି କ୍ଷୁଦ୍ର ପକ୍ଷୀ-ସ୍ୱର
କି ଚିକ୍‌କଣ, ନାନା ବର୍ଣ୍ଣେ କେମନ୍ତେ ରଞ୍ଜଣ !
କୋଟି କୋଟି ମହାବିଶ୍ୱ ରଚେ ଯେଉଁ କର,
ସେ ପୁଣି କରଇ ଏହି ବାଳକ-କ୍ରୀଡ଼ନ ?

ସେଇ ତ ଭରସା ମମ । ରାଜରାଜେଶ୍ୱର
ଅଟ ତୁମ୍ଭେ, ହୀନତମ ମୁଁ ଅଜ୍ଞାନତମ
ପଡ଼ିଛି ଅଜ୍ଞାତ କୋଣେ ଜଗତ ବିସ୍ମରି;
କିନ୍ତୁ ଆଶା, ପାଇବି ମୁଁ ପରଶ ପରମ ।

କେବେ ହେଲେ କରି ପୃଷ୍ଠେ ଅଙ୍ଗୁଳି ସଂସ୍ପର
ହେ ଜଗତ, ମାନ ରଖ, ମୋର କ୍ଷୁଦ୍ରତାର ।

---

# ଜନ୍ମ ଜନ୍ମାନ୍ତର

ଜନ୍ମେ ଜନ୍ମେ କରିଛୁ ଯା’ ଯେତେ ଅନ୍ୱେଷଣ
ତୃପ୍ତି ଖୋଜି ଏଣେ ତେଣେ ଧାଇଁଥିବ ଯାହା
ବାସନାର ଚରିତାର୍ଥେ ଯେତେକ ସାଧନ,
ସେ ସବୁ ହେନାଥ, ତତେ ଖୋଜିବାର ସ୍ପୃହା ।

ଧନେ, ମାନେ, ଯଶେ, କାନ୍ତ କାମିନୀନୟନେ,
ହେ ପ୍ରିୟ, ତୁମରେ ସିନା ଖୋଜିଛୁ ମୁଁ ଶତ
ଚୁମ୍ବିଛି, ସୁନ୍ଦର ତତେ ଆନର ଆନନେ,
ନାନା ଦୁଃଖେ ତୋହ ଲାଗି ଜାଳିଅଛି ମାତ ।

ଲୁବ୍ଧଜୀବ ନାନାପଥେ ଖୋଜିଅଛି ବାଟ
କାହିଁ ସେ ପାଇବ ତାର ତୃପ୍ତି ଅପହୃତ,
ଆଘାତିଛି ଖୋଲିବାକୁ ଅଗଣ କବାଟ,
କିଏ ତାକୁ ଦେବ ସେହି ବସ୍ତୁ ତ ଅମୃତ

ନାନା-ଫୁଲ-ମାଳା ମୋର ଜନ୍ମଜନ୍ମାନ୍ତର
ଭେଟି ଦେଖିବାକୁ ଶେଷେ ଚରଣ ପ୍ରିୟତ ।

———

## ଅବୋଧର ଅଧିକାର

ନାହିଁ ଜ୍ଞାନ, ନାହିଁ କର୍ମ, ଧ୍ୟାନ, ଅକିଞ୍ଚନ
କେ ଯେନ ହୋଇବ ମୋର ଦେବ-ଦରଶନ ?

ଭାଗ୍ୟବାନ କେତେ ସବୁ ଯାନ୍ତି ପଥେ ପଥେ
ଦେବତାମନ୍ଦିରେ, ଚଢ଼ି ନିଜ ନିଜ ରଥେ,
ସାଥେ ତାଙ୍କ ନାନା ଦ୍ରବ୍ୟ, ନାନା ଉପହାର,
ଶୂନ୍ୟ-ହସ୍ତେ ଯିବେ, କାହିଁ ମୋର ଅଧିକାର ?

କିନ୍ତୁ ଯା ଦର୍ଶନ ଲାଗି ପ୍ରେମିକ ଲାଳସୀ
ନାନା ଯୁକ୍ତି ଅନୁନୟେ ତୋଷଇ ପ୍ରେୟସୀ,
ଅଙ୍କ-ଶିଶୁ ଖେଳେ ଯେବେ ସେହି ପୟୋଧର,
ତେଣୁ ଭାବେଁ, ତାହା ଅଛି ଅଜ୍ଞ, ଅବୋଧର ।

ଶିଶୁ ଯେହ୍ନେ ଡାକେ ମାତେ, ମୁହିଁ ସେହିପରି
ଡାକୁଛି ତୁମରେ କେତେ ଏକାନ୍ତ ନିର୍ଭରି;
ଶିଶୁର ଜନମ ସଙ୍ଗେ ଯେଉଁ ଅଧିକାର
ତୋ ପଦେ ତାହାହିଁ ମାଗେ ମୋର ଅଶ୍ରୁଧାର ।



# ପାନ୍ଥ-ଗାଥା

୧

ସମରୁ ବିଧ୍ୱସ୍ତ ଧରା, ଦୁଃଖମୟ କାଳ,
ତୀବ୍ରୁ ତୀବ୍ରତର ଆଜି ଜୀବନ-ସଂଗ୍ରାମ,
ସ୍ଥାଣୁ କରେ ମାନବରେ ବଞ୍ଚିବା-ଜଞ୍ଜାଳ
ବେଳ କାର କାହିଁ, କରେ ଈଶ୍ୱରେ ପ୍ରଣାମ ?

୨

ବିଜୟୀ ବିଜିତ-ଉଭ ବଣ୍ଟନେ ବ୍ୟାପୃତ,
ଉଡ଼ନ୍ତ ସକଳ ଦେଶେ ମୃତ୍ୟୁର ଈଗଲ
କେ ପଙ୍ଗୁରେ କେ ବୁଭୁକ୍ଷୁ, ଜୀବିତ ବା ମୃତ
ସର୍ବ ମୁଖୁଁ ନିଃସରଇ ବିଷାଦ-ଗରଳ ।

୩

ଏଇ ତ ହୋଇଛୁ ଶେଷ ମରଣ-ତାଣ୍ଡବ,
ଦେଶେ ଦେଶେ ନରମେଧ ବଣ୍ଟିକାମୟ
ଦେଖିଲୁଁ ଉଠିବା ଶକ୍ତି ମନ୍ଥି ଗାଣ୍ଡୀବ
ବଂଶ ହସ୍ତେ ନାଶ-ବେଦ, ଧ୍ୱଂସ-ଅସ୍ତ୍ରଚୟ ।

୪

ଦେଖିଲେହେଁ ବିଶ୍ୱ-ତ୍ରାସ ସେ ରକ୍ତ-ନାଟକ,
ପୁଣି ମତ୍ତ ବ୍ୟକ୍ତି, ଜାତି, ପ୍ରାଚୀନ ବିବାଦେ—
ଅନ୍ୟ ମାଥେ ପାଦ ରଖି କେ ହେବ ଶାସକ !
ଅହଂକାରେ ପୁଣି ସର୍ବେ ଅଶାନ୍ତ ପ୍ରମାଦେ ।

୫

ହେ ଧରାପଥର ପାନ୍ଥ, ଠିଆ ହୁଅ ଭାଇ,
ଶୁଣ ଦଣ୍ଡେ କବିମୁଖୁଁ ତତ୍ତ୍ୱ ଦୁଇ ପଦ,
ଯାହା କର, ଶ୍ମଶାନୁଁ କି ପାରିବ ପଳାଇ ?
ସବୁ ଆଡ଼ମ୍ବର ତହିଁ ଜାଣ ତ ସୁବୋଧ ?

୬

ଆସିଛ ପ୍ରବାସି-ଯାତ୍ରି, ଧରା-ପାନ୍ଥଶାଳେ,
କିପାଁ ଭାବ ତୁମର ଏ ଚିରବାସ ବୋଲି
ତେଣୁ ତ ଧରଣୀ ଜର୍ଜରିତ ତକସଳେ,
ବୃଥା-ଶ୍ରମ-ଧୂଳି ହୁଅ ଶସ୍ୟରେ ବୋଲି !

୭

କି ଲାଭେ ପରରେ ବୃଥା କ୍ରୂର ନିର୍ଯ୍ୟାତନା,
ଯା ପାଅ ଶେଷରେ, ତାହା ବସ୍ତୁ ଅବା ଛାଇ ?
ବୁଝି ମଧ୍ୟ ନାହିଁ କର ଆତ୍ମ-ପ୍ରତାରଣା,
ସବୁ କାମ କର ଭାଇ, ବିବେକ ଖଟାଇ ।

୮

ସୂଚୀବିଦ୍ଧ ହେଲେ ହୁଏ ଯାତନା ତୁମ୍ଭର,
ନିଜପାଇଁ ଭଲ ଖାଦ୍ୟ, ବାସେ ତବ ଆଶ,
ସମ ଆଶା, ଅନୁଭୂତି ଅନ୍ୟ ପ୍ରାଣୀଙ୍କର
ଭୁଲିବାରୁ, ଏ ଜଗତ ହୁଏ ଦୁଃଖବାସ ।

୯

କର ଭୋଗ ଧର୍ମ-ସୁଖ; ମୁଁ ଜାଓଣିଁ ଈଶ୍ୱର
ସୃଜିଲେ ସୁନ୍ଦର ବସ୍ତୁ ଜୀବ-ଭୋଗପାଇଁ
ନ ହେଲେ କିପାଇଁ ଥାନ୍ତା ଗନ୍ଧ କୁସୁମର,
ଯୁବତୀର ନୟନରେ ଆକାଶର ଛାଇ !

୧୦

କେ କି ଭାବେ କିନ୍ତୁ, ଏଥି ସୁଖୀ ହେବା ପାଇଁ
କେତେ ଅଳ୍ପ ଦ୍ରବ୍ୟ ଲୋଡ଼ା ! ଦୀନ ତା କୁଟୀରେ
ଲଭଇ ଯେ ସୁଖ ସ୍ୱେଦ-ଜାତ ଅନ୍ନ ଖାଇ,
ନାହିଁ ପାଏ ଧନପତି ଜଗତିରେ ଥାଇ !

୧୧

ସ୍ୱଶ୍ରମ-ଲବ୍ଧ ଅନ୍ନ, ସଖୀ ସ୍ନେହବନ୍ତ
ସଂଗୀତ ସାହିତ୍ୟ ସେବା, ନୀରୋଗ ଶରୀର
ଅଋଣୀ, ଅପରାଧୀନ, ସତ୍ୟ-ଯୁକ୍ତ-ମତି
ଏତେହୁଁ କି ବଳି ଲୋଭ ଅଛି ପୃଥିବୀର ?

୧୨

ଗାଢ଼ ଗାଢ଼ ଶାସ୍ତ୍ର ପଢ଼ି ଶିଖିଛୁ ମୁଁ ଶେଷେ
ଦୁଇ ସାର କଥା—ଜ୍ଞାନ, ପର-ଉପକାର,
ଅଜ୍ଞତାକୁଁ ଦୁଃଖ ହୋଇ ଆସେ ନାନା ବେଶେ
ସ୍ୱାର୍ଥକୁଁ ପ୍ରଥମ ବୀଜ ସର୍ବ ଯନ୍ତ୍ରଣାର ।

୧୩

ପ୍ରକୃତିର ଗନ୍ତାଘର ଫିଟିବ କେବଳ
ବୁଦ୍ଧି-ରସାଣିତ ନର-ଜ୍ଞାନ-କୁଞ୍ଚିକାରେ
ସେ ଜ୍ଞାନେ କରି ହେ ଧରାବାସ ସୁଖକର,
ମୂର୍ଖତା କେବଳ ହାତ ମାରିବା କପାଳେ ।

୧୪

ଜ୍ଞାନ, କର୍ମ ଏକ ଜନ୍ମ, ଜଳେ ସ୍ୱାର୍ଥତ୍ୟାଗ,
ନ ମିଳନ୍ତା କେତେ ଲୋକ ଭାଗ୍ୟେ ସଜ୍ଜନର ?
କହିଁ ଯୁଗେ ଯୁଗେ ହୋନ୍ତା ନରମେଧ ଯାଗ,
ନରଭକ୍ତେ, ନ[illegible] କୀର୍ତ୍ତି ଧରାତଳ ?

୧୫

ସତ୍ୟ ବଡ଼, ଦେଶ, ଜାତି, ଶାସ୍ତ୍ର, ନେତାଠାରୁ
ସେବା ସମ ନାହିଁ ଯଜ୍ଞ, ନାହିଁ ଉପାସନା,
ନାହିଁ ଅପକର୍ମ ଜୀବେ କଷଣ ଦେବାରୁ,
ଧର୍ମ, ଦେଶ ନାମେ ତେବା ନରେ କଦର୍ଥନା ।

୧୬

ଏ ଧରା, ମନୁଷ୍ୟ ଜାତି ଏକ ପିତାଙ୍କର,
କଳା, ଗୋରା, ପୀତ, ରକ୍ତ ସର୍ବେ ଭାଇ ଭାଇ
ସ୍ରଷ୍ଟାଙ୍କର ନଦନଦୀ, ଭୂଧର, ସାଗର,
ଦେଖୁଛ କି ଅଂଶୀକୃତ କାହିଁ କାହାପାଇଁ ?

୧୭

ସର୍ବେ ନାଶଗର୍ଭେ ଜାତ, ସମାପ୍ତ ଶ୍ମଶାନେ;
ପୂର୍ବ, ପର ଜଣା ନାହିଁ, ମଧ୍ୟେ ଯେତେ କାଳ,
ଚିରନ୍ତନ ଭାବ ଧରା-ଜୀବନ ଅଜ୍ଞାନେ,
ସତ୍ୟ, ସୁଖ, ଶାଶ୍ୱତକୁ ଦିଅ କପାଳ ବଳି ?

୧୮

ସବୁବେଳେ ନମ୍ର-ଦୃଷ୍ଟି, ହେ ନର, ଅନାଅ
ବେଳେ ଊର୍ଦ୍ଧ୍ୱ ମହାକାଶେ, ତାରକା-ଖଚିତ,
ମହତରେ ଦେଖି ତହିଁ, କ୍ଷୁଦ୍ରତା ଛଡ଼ାଅ,
ଉଦାରେ ମିଶାଅ ନିଜ ଆତ୍ମା ସଂକୁଚିତ ।

୧୯

ଛନ୍ତି ଧାଏଁ କୋଟି କୋଟି ସୂର୍ଯ୍ୟ-ପରିବାର
ଚନ୍ଦ୍ରାଶ୍ରିତ ବେଗେ ଅନ୍ତହୀନ ବିହାୟସେ,
କି ଲକ୍ଷ୍ୟ, କେ ନାହିଁ ଜାଣେ, ଆଦେଶେ କାହାର
ନ ଭରିବ କା ଚିତ୍ତ, ସେ ଦୃଶ୍ୟ ଦିବ୍ୟ ରସେ ?

୨୦

ଅଗଣ ସେ ବିଶ୍ୱ ମେଳେ ଆମ ଏ ଧରଣୀ,
ହିମାଳୟ-ପଦ-ଲଗ୍ନ ସର୍ଷପ ସମାନ,
ସେ ସୋରିଷେ ମେଲୁ ଆମ ଅହଂର ବିପଣୀ,
କୀଟ ବୃନ୍ଦେ କୀଟଠାରୁ ଭୟ ଓ ସମ୍ମାନ ।

୨୧

ଯୁଗେ ଯୁଗେ ଯେତେ ଜ୍ଞାନୀ ବୁଦ୍ଧି-ନିଃଶ୍ରେଣୀରେ
ଗଲେ ଊର୍ଦ୍ଧ୍ୱେ କଳିବାକୁ ସୃଷ୍ଟି ଆଦି, ଅନ୍ତ
ହେଲା ଶେଷ ତାଙ୍କ ଚେଷ୍ଟା 'ନେତି' 'ନେତି' ଗୀରେ,
ଏବେ ମଧ୍ୟ ରହସ୍ୟରେ ଆବୃତ ସମସ୍ତ ।

୨୨

କିନ୍ତୁ ସେ ରହସ୍ୟ, ଖୋଲେ ମୂର୍ଖୁଁ ଆବରଣ
ଯଦି କେହି ଆଢ଼ାଳରେ ତାର ବାତାୟନେ
ନିଶୀଥ-ପ୍ରେମିକ ପରି; ନିଃଶେଷେ ବର୍ଜନ
କରି, ଯାହା ଭୋଗ୍ୟ ବୋଲି ଭାବିଥାନ୍ତି ଜନେ ।

୨୩

ଦୂରେ ନାହିଁ, ନାହିଁ ସେ ଯେ ଲୁଚି ଅନ୍ତରାଳେ,
ସେ ଯେ ଊର୍ଦ୍ଧ୍ୱେ, ନିମ୍ନେ, ଆଗେ, ପଛେ ପ୍ରକାଶିତ
ବସନ୍ତେ କିଏ ସେ ନବ ଜୀବନ ସଂଗ୍ରହେ ?
କୁସୁମକୁ ବର୍ଣ୍ଣେ ଗନ୍ଧେ କରେ ବିଭୂଷିତ ?

୨୪

ଜୀବର କଲ୍ୟାଣପାଇଁ ବୀଜରୂପେ ଫାଟି
ଉଠେ ସେ ଖେଳାଇ ଶ୍ୟାମ-କ୍ଷେତ୍ରରେ ଲହରୀ,
ଶସ୍ୟ ହୋଇ ଶୁଖେ ଆପେ, କୃଷୀ ନିଏ କାଟି,
ବଞ୍ଚୁ ଆମେ ସେ ଈଶ୍ୱରେ ଉଦରରେ ଭରି ।

୨୫

ଏସନେ ସେ ଅହରହ ନିତ୍ୟ ବନ୍ଧେ ମରେ,
ଲାଗିଅଛି ପରମର ସୃଜନ ଓ କ୍ଷୟ,
ସେହି ସୁଖ, ସେହି ପୁଣି ଅଶ୍ରୁ ହୋଇ ଝରେ,
ଅର୍ଥହୀନ ହେବ କି ଏ ମହା-ଅଭିନୟ ?

୨୬

ବେଦନା ବୋଲି ଯା ଦିଶେ ନେତ୍ରେ ବର୍ତ୍ତମାନ,
ସୁଖର ଅବନ୍ଧ୍ୟ ବୀଜ, ନିଶ୍ଚେ ତା ଫଳିବ
ଅନ୍ୟକାଳେ, ଅନ୍ୟ ସ୍ଥାନେ । ଏବ ବସ୍ତୁ, ମାନ
କେ ନ ଜାଣେ ଯଥାକାଳେ ଧୂଳିରେ ମିଶିବ ?

୨୭

ଅଲଂଘ୍ୟ ନିୟମ ଜାଲେ ବନ୍ଧା ସେ ଈଶ୍ୱର
ଆପଣା ନିର୍ଘଣ୍ଟକ୍ରମେ ଆସେ ତାଙ୍କ ରଥ,
ସୁଖ, ଦୁଖ, ଭଙ୍ଗା, ଗଢ଼ା, ଚକ୍ର ସେ ରଥର,
ବିଶ୍ୱ-ରେଣୁ ମହାକାଳ ତାଙ୍କ ରାଜପଥ ।

୨୮

କେ ଧରାପ୍ରବାସି-ନର, ଏ ଶ୍ରେଷ୍ଠ ଧରଣୀ
ଯାର ଆଦ୍ୟ, ମଧ୍ୟ, ଶେଷ ଧରିଛ ଆକଳି
ନିଜ ଜ୍ଞାନେ ମାପ କରି ସ୍ରଷ୍ଟାର କରଣି ?
ଅଗଣ ଧରଣୀ ସ୍ରଷ୍ଟା ରଖିଛନ୍ତି ଗଢ଼ି !

୨୯

ନ ଦେଖିଛ ଯେ ସୁଷମା, ଶୁଣିନା ଶ୍ରବଣେ
ଯେ ସଂଗୀତ, ନ ପଢ଼ିଛ ଯେ କାବ୍ୟ ମଧୁର
ଲୋକେ ଲୋକେ ଅଛି ତାହା ସ୍ରଷ୍ଟାଙ୍କ ସୃଷ୍ଟି କ୍ରମେ,
ଅଜ୍ଞାତ ଭାବନା ସବୁ ଏ ମାଟିରେ ଦୂର ।

୩୦

ଦେଖୁଁ ଦେଖୁଁ ସହିଁ ପ୍ରିୟା କନକ କପୋଳ
ପଡ଼ଇ ଝାଉଁଳି, ଓଠୁ ଲାଳିତ୍ୟ ଉଭାଏ,
ଆଖି ଆଗେ ଯଉବନ ହରେ କାଳ-ଚୋର,
କବି ସହିଁ ମାନବର ବେଦନାକୁ ଗାଏ ।

୩୧

କି ହେତୁ ରେ ସେ ମୃତ୍ତିକା ଏତେ ଲୋଭମୟ ?
ଅକାରଣେ ନ କର ହେ ଆତ୍ମ-ପ୍ରତାରଣା !
ଧୂସର ଦେହୀର ଯାହା ଆନନ୍ଦେ ତା ନଅ,
ମୂର୍ଚ୍ଛା, କ୍ଷଣକ ଲଗି ହେବା ଜ୍ଞାନ-କଣା ।

୩୨

ପଥଭ୍ରାନ୍ତ ହୁଏ ପାନ୍ଥ, ପୃଥ୍ୱୀଙ୍କର ଦାନେ
ମତ୍ତ ହୋଇ ଭୁଲେ ଯେବେ ସର୍ବ-ଦାନ-ମୂଳ
ସ୍ରଷ୍ଟାରେ । ନଜକା ଯଦି ଆତ୍ମ-ଅଭିମାନେ
କଣ୍ଠରେ ବନ୍ଧନ ଭାବେ, ହେବ କେଉଁ କୂଳ ?

୩୩

ଈଶ୍ୱରେ ଅମର ବାସ, ଖୋଜନ୍ତୁ ଈଶ୍ୱରେ,
ଲୋଭନ୍ତୁଁ ଏ ଧରା ଚାକ-ପ୍ରବଞ୍ଚ ଇନ୍ଦ୍ରିୟେ,
ତାରନ୍ତୁ ତଳପା ଯାଏ ସେନ୍ତୁ ସର୍ବ ସ୍ଥଳେ,
ସେହି ଧନ, ସେହି ପ୍ରିୟା, ସେ ରସେ, ଅମୀୟେ ।

୩୪

କିନ୍ତୁ ସେହି ମୂର୍ଖ, ଯେନ୍ତୁ ଭାବେ ସେ ଈଶ୍ୱର
କଟାଇବେ ପ୍ରତି କାମ ଗୃହ-ଗୁରୁ ପରି,
ସଂପଦ ଖୋଇବେ ଆଣି ଧାନଜନ-କରେ,
ମଦ୍ୟପେ ଭୋଷିବେ ସ୍ୱୟଂ ମଦ୍ୟ-ପାତ୍ର ଧରି ।

୩୫

ଚେଷ୍ଟା ଓ ବିକାଶ ଦୁଇ, ସୃଷ୍ଟିର ନିୟମ,
ଶିଶୁ ହୁଏ ମହାବୀର, ଅଜ୍ଞାନ ପଣ୍ଡିତ,
ଦରିଦ୍ର ହୋଇବ ପୁଣି ଧନିକ ପରମ
ତାମସ-ଜୀବନ ହେବ ସତ୍ତ୍ୱ-ବିଭୂଷିତ ।

୩୬

ଗଜ୍ଜରିବ ଆତ୍ମା-ଯତ୍ନେ ପତନୁଁ ଉଠିବା
ପଜ୍ଜରୁଷ ନୁହେଁ ହେବା ଗଢ଼ା-ମୂର୍ତ୍ତି ପରି,
ସୁଖ,ନିଜ ସ୍ୱେଦେ ନିଜ ଅନ୍ନ ଅରଜିବା
ପିବା ନିଜ ଦୁଃଖ ନିଜ ବାହୁରେ ସନ୍ତରି ।

୩୭

ତେଣୁ ଏତେ ଭୁଲ୍-ମୟ ମାନବ-ଜୀବନ
ଏତେ ବଙ୍କା ଠଙ୍କା ନର-ବିକାଶର ପଥ,
ଯୁଗେ ଯୁଗେ, ସବା ଆଗେ ତାଙ୍କର ଆସନ
ଆତ୍ମ-ଚେଷ୍ଟା-ଅଶ୍ୱ ବଳେ ଚଳେ ଯାଙ୍କ ରଥ ।

୩୮

ଏକେଶ୍ୱର ଉପାସକ ମାମୁଦ-ଗଜନି
ଦେଖି ଭଙ୍ଗେ ସୋମନାଥ ମନ୍ଦିର ପ୍ରାଚୀର,
ପୁରେଶ୍ଚତେ ବିଳପନ୍ତି ଯେସନେ ରମଣୀ,
ମୁଣ୍ଡି କୋଢ଼ି, 'ଶାନ୍ତି' କହି, ଚରଣେ ମୂର୍ତ୍ତିର ।

୩୯

ବିଧାତା କି ଏତେ ମୂର୍ଖ, ବିଜୟ-ତିଲକ
ନ ଦିଅନ୍ତେ କର୍ମ-ଦୃପ୍ତ ମୁସଲମାନରେ ?
କି ନୟନେ ସେ ବିରାଟ-ଈଶ୍ୱର ଝଳକ
ବିଜୟୀ କରନ୍ତେ ଠକ ପୁରୋହିତ ଦଳେ ?

୪୦

ଯେ ଅଛୁ ଅଳସ, ଅଜ୍ଞ, ଦୁର୍ବଳ ପଥିକ,
ଉଠ ଭାଇ, ଈଶ୍ୱରଙ୍କୁ ଜଗାଅ ଅନ୍ତରେ,
ମାନବର ଦେହ-ମନୁଁ କି ଅଛି ଅଧିକ ?
ତାହାର ବିକାଶ-ବୃଦ୍ଧି କର ସ୍ତରେ ସ୍ତରେ ।

୪୧

ଜାଗ୍ରତ ଈଶ୍ୱର ହେବ ତୃତୀୟ ନୟନ,
ସେ ନୟନେ ସତ୍ୟ-ମିଥ୍ୟା-ପ୍ରଭେଦ ଦିଶିବ,
କର୍ମ କର, ଛାଡ଼ ଶୁଷ୍କ ନାମ-ପାରାୟଣ,
ସର୍ବବିଧ କଲ୍ୟାଣରେ ଧରଣୀ ହସିବ ।

୪୨

କର ଭୋଗ, ଭଲ, ମନ୍ଦ ଉଭୟ ବିସ୍ତର,
ସଂଯମେ ଲଭଇ ଆତ୍ମା ବିମଳ ବିକାଶ,
ସ୍ଥୂଳରୁ ଦୂରେଇ ଛୁଟ, ସୂକ୍ଷ୍ମରେ ପ୍ରସାର,
ଜ୍ଞାନ-ଦୀପ ଜାଳି ତତ୍ତ୍ୱେ, ତମ କର ନାଶ ।

୪୩

ନିଜ ମନେ ଗଢ଼ ଯା'ନ୍ତୁ ! ସ୍ଥୂଳ କୁଁ, କ୍ଷଣିକରୁ
ଓଟାର ନିଯୋଗ ଚାଲୁ ସୂକ୍ଷ୍ମ ଆନନ୍ଦରେ,
ଦେଖିବ ବିଲୋପ ହେବ ବିବାଦ ବିଶ୍ୱରୁ
ସର୍ବ ଧର୍ମ, ଜାତି, ବ୍ୟକ୍ତି, ଏକ ସୂକ୍ଷ୍ମ-ସ୍ତରେ ।

୪୪

ସେହି ମନ ଦୃଢ଼ କର ଧ୍ୟାନରୁ ଧ୍ୟାଇ
ବେଗ, ବିଜା, ଶାସ୍ତ୍ର, ଭାଗ୍ୟ, ପୂର୍ବୋହିତଙ୍କର
ଦାସତ୍ୱର ସୁପ୍ରାଚୀନ ଖୋଳପା ଫିଟାଅ,
ଜାଣ ନିଜେ ସତ୍ୟେ ତୁମେ ପୁଣି ଈଶ୍ୱରର ।

୪୫

କେ ହିନ୍ଦୁ, ଖ୍ରୀଷ୍ଟାନ, ବୌଦ୍ଧ, କିଏ ମୁସଲ୍‌ମାନ୍‌
କେ ନିରାମିଷାଶୀ, କିଏ ଉପବାଚଧାରୀ
ବିଶ୍ୱେଶ୍ୱର ଆଖେ ଏ ଯେ ପିଲା-ଖେଳମାନ,
ବୃଥା ଦ୍ୱନ୍ଦ୍ୱ କେ କାଫେର୍‌, ବ୍ରାହ୍ମ ବା ସାକାରୀ ।

୪୬

ଜୀବନ ସୁନ୍ଦର କର ଖଟାଇ ବିତ୍ତିର,
ଲଗାଇ ବୁଦ୍ଧି ଓ ବାହୁ ଭୋଗ ଧରଣୀରେ
ନ ଚାଳିଲେ ଅନ୍ୟ, ତମ ଯୋଗୁ ନେଇ ଧାରି,
ସବୁ ଠିକ୍‌,—ମର ଯାନ୍ତୁ, ସୁଖେ ଏ ମାଟିରେ ।

୪୭

ଆସ ଭାଇ, ଶ୍ୱେତ, କୃଷ୍ଣ, ଲୋହିତ, ପିଙ୍ଗଳ,
ହିନ୍ଦୁ, ବୌଦ୍ଧ, ଜୈନ, ପାର୍ଶି, ଖ୍ରୀଷ୍ଟ, ମୁସଲ୍‌ମାନ,
ବିଶୁଦ୍ଧ, ସଙ୍କର—ଧର୍ମ-ପଥ-ଯାତ୍ରୀଦଳ,
ଭୁଲି ଶ୍ରେଷ୍ଠ ସ୍ୱାର୍ଥ, କର ଦ୍ୱନ୍ଦ୍ୱ ଅବସାନ ।

୪୮

ଖୋଲ ଭାଇ ମନ୍ଦୁଁ, ମୁଖୁଁ, ମୁଖା ଭିନ୍ନତାର,
ପରସ୍ପରେ ଚିହ୍ନି ଦେଖ, ସର୍ବେ ଭାଇ ଭାଇ;
ସର୍ବେ ଆମେ ପୁତ୍ର, କନ୍ୟା, ଏକ ବିଧାତାର,
ଏଣୁତ୍ତ, ଶ୍ମଶାନେ ସର୍ବେ ସମାନ କି ନାହିଁ ?

୪୯

ସମସ୍ତେ ଈଶ୍ୱର-ପୁତ୍ର, ସମସ୍ତେ ସମାନ,
ସମସ୍ତଙ୍କ ଧର୍ମକ୍ଷେତ୍ରେ ସମ ଅଧିକାର,
ପରମପିତାଙ୍କୁ ସେ ଯେ ତୀବ୍ର ଅପମାନ,
ଅନ୍ୟେ ଯଦି ପୀଡ଼େ ତବ ଅଜ୍ଞ ଅହଂକାର ।

୫୦

ପ୍ରତ୍ୟେକେ ସ୍ୱାଧୀନ, ସଭ୍ୟ,—କିନ୍ତୁ ପରସ୍ପରେ
ମଧୁ-ସ୍ପର୍ଶ ରହୁ ମୈତ୍ରୀ, ସମବେଦନାର
ସ୍ୱର୍ଗ ହେବ ପ୍ରତିଷ୍ଠିତ, ତେବେ ଧରା ପରେ
ତା ନ ହେଲେ ବୃଥା ଯେତେ ଖ୍ରୀଷ୍ଟୀୟ ବିସ୍ତାର ।

———

# ସ୍ୱର୍ଗଚ୍ୟୁତ

ଏଇ ତ ସେଦିନ ମତେ, ଗଛ, ଲତା, ଫୁଲ, ବାୟୁ
କଥା କହୁଥିଲେ ସବୁ !—ନିତ ନିତ ସନ୍ତ ସାଧୁ,
ମନଷର ପିଞ୍ଜରରୁ ଖୋଲି କୋଳେ ପ୍ରକୃତିର,
ଧାଉଁଥିଲି ଦେଖିବାକୁ ମାୟାରୂପ ଧରଣୀର ।

ଘାସ ମାଳେ ଶିଶିରର ତରଳ ମୌକ୍ତିକ ଶୋଭା
ଦେଖି ସେବେ ଶିଶୁ ମନ ହେଉଥିଲା ଯାହା ଲୋଭା;
ଆଜ ଦେଖି ଦେଖି ଆଖେ ନାନା ଯାଦୁ ସଭଂତାର
ସେ ଆନନ୍ଦ, ଉଚ୍ଛ୍ୱାସନ, ତୃପ୍ତି କାହିଁ ଏ ଆତ୍ମାର ?

କି ଦେଲ ଜୀବନ-ନାଥ, ବୟସ ବଢ଼ନ୍ତ ସାଥେ;
ସ୍ୱର୍ଗ ମୋର ନେଲ କାଢ଼ି, ଜ୍ଞାନ-ଫଳ ଦେଇ ହାତେ ।
କି ବିଶ୍ୱାସ ଥିଲା ଚିତ୍ତେ—ଜନ୍ତୁ, ଜନ, କାହାଣୀର
ଜୀଇ ଉଠି ଶିଶୁମନ, ନାହିଁ ରଖୁଥିଲେ ସ୍ଥିର;

ସାଧବ ପୁଅକୁ ମେଷ, କଲି ମନ୍ତ୍ରେ ମାଲୁଆଣୀ;
କାନ୍ଦନ୍ତି ଅଶୋକ ବନେ ଆହା ସୀତା ଠାକୁରାଣୀ;
ସେ ଲାଗି ଯେ ସମଦୁଃଖ, ଜୀବନେ ତା ଆଉ କାହିଁ ?
ସେ ମଧୁର କଳ୍ପଲୋକ ହଜିଲା କାହିଁପାଇଁ ?

ଦେବ ଦେଖା ଥିଲେ ପାଖେ, ସ୍ୱର୍ଗ ଥିଲା ମଥାପରେ
ରଚନାରେ ସତ୍ୟ ଥିଲା, କୌତୂହଳ ନୟନରେ,
କମ୍ର ଥିଲା ଅବୟବ, ଥିଲା ପ୍ରାଣ ସୁକୋମଳ
ଜଗତ ବି ଦିଶୁଥିଲା ଆନନ୍ଦ-ମଧୁରସ୍ଥଳ ।

ସବୁ ଆଜି ବିପରୀତ, କ୍ଳାନ୍ତ, ରୁକ୍ଷ, ନିରାନନ୍ଦ,
ଜୀବନ-କବିତା କେବେଁ ହରାଇଛି ତାର ଛନ୍ଦ ।
ଡାକେ ଚିତେ ଦଗ୍ଧ-ଚିତ୍ତ କବି ହେ ଜୀବନ-ନାଥ
ନିଅ କାଢ଼ି ଜୀବନରୁ ଏ ଅଯାଚିତ ବିପତ୍‌ପାତ ।

ନିଅ ଚିତ୍ତୁଁ ତର୍କ, ଦ୍ୱନ୍ଦ୍ୱ, ନିଅ ଜ୍ଞାନ, ଗବେଷଣା,
ଭ୍ରାନ୍ତ ପରି ଏଣେତେଣେ ଘୂରି ସୁଖ-ଅନ୍ୱେଷଣା ।
ଦିଅ ପୁଣି ସେଦିନର ନିବିଡ଼ ବିଶ୍ୱାସ ପ୍ରାଣେ
ଦେବତା ଖେଳିବେ ସାଥେ, ଭେଟିବି ଭୁମରେ ଘ୍ରାଣେ ।

ମାୟାଞ୍ଜନ ଦିଅ ନେତ୍ରେ, ଶିଖ ପୁଣି ଦିଶୁ ଧରା
ତଥ୍ୟ ମୋର ଲୋଡ଼ା ନାହିଁ, ଯଦି ତାହା ତମ-ଛଡ଼ା ।



# ଭିଖାରୀ

ଭିଖାରୀ ଗାଉଛି ଗୀତ,
                    ଗାଆ ରେ ଭିଖାରୀ,
ଶୁଣୁଛି ମୁଁ, ବାତାୟନ ପାଶେ କାନ ପାରି ।

ଧୂଳିବିମଳିନ-ଦେହ, ଜୀର୍ଣ୍ଣ ଦେହ-ବାସ,
ଶୀର୍ଣ୍ଣ ମୁଖେ ଦାରିଦ୍ର୍ୟର ବିଶଦ ବିଳାସ,
ଦାଣ୍ଡେ ଉଭା ଧୂଳିପରେ, ଭୟେ ସଂକୋଚରେ
କେ କରୁଛି କମ୍ପିତ ସ୍ୱର ।
                    ତଥାପି କଣ୍ଠରେ
ମଧୁର ସଂଗୀତ ଫୁଟେ, ଗାଆ ରେ ଭିଖାରୀ
ଶୁଣୁଛି ମୁଁ ବାତାୟନ ପାଶେ କାନ ପାରି ।
ଗୀତ ଶୁଣି କିନ୍ତୁ ତିକ୍ତ ହେଲେଣି ଗୃହିଣୀ;
ତିକ୍ତତର ଗୃହ-ଭୃତ୍ୟ । ଖାଇଯିବେ ଭଣି
ପରା ଏ ଭିଖାରୀ ଦଳ ! ଏକଇ ସକାଳେ
ଏ ହେଲା ସପ୍ତମ ଜଣ ! ଫେରାଇ ବା କାହେଁ
ଦେବୁଁ ଗୃହସ୍ଥର ଦ୍ୱାରୁ ?
                    ତଥାପି ଘରଣୀ
ଦେଲେ ଶେଷେ ଭିକ୍ଷା ଡାଳ ମନେ ଜବା ମଣି;

ଶୁଣିଲେଣି ଗୀତ ପୁଣି; ମିଠା ଲାଗେ କାନେ,
ଭିଖାରୀ ଦେଉଛି କଣ୍ଠ ଭିଖ-ପ୍ରତିଦାନେ !
କ୍ଷୁଧା ପାଇ କଣ୍ଠୁ ସୁଧା ଢାଳଇ ଭିଖାରୀ,
ଦାରୁଣ ଦାରିଦ୍ର୍ୟ ମଧ୍ୟ, ନର ସୃଷ୍ଟି-କାରୀ ।

ଭିଖାରୀ ଜାଣେ ନା ନିଜେ କଅଣ ସେ ଗାଏ ।
ତଥାପି ଲାଗଇ ଯେହ୍ନେ ମାଟି ଭାଷା ପାଏ
ନଖିଳ ଏ ଧରଣୀର; ସଂଗୀତ ତାହାର
କଣ୍ଠେ ପଶି ହୃଦେ କରେ ଉଦାସ ସଂଗ୍ରାର ।
ଏ ମର୍ତ୍ତ୍ୟେ ମାନବ ଜାତି ଶାଶ୍ୱତ ଭିଖାରୀ
ମାଗଇ ପ୍ରସାଦ କରଯୁଗଳ ପ୍ରସାରି
ଅଜ୍ଞାତ ଈଶ୍ୱର ପଦେ, ଅନ୍ତରୀକ୍ଷେ ଚାହିଁ,
ତା ବିନା ଏ ଗହନରେ ଭରସା ବା କାହିଁ ?
ସେ-ଭିଖାରୀ-ଧରଣୀର ହୃଦୟର ଭାଷା
ଏ-ଭିଖାରୀ କଣ୍ଠେ ଫୁଟେ । ଦେହର ପିପାସା
ପ୍ରାଣ-ପିପାସାର ସଖୀ । ଏ ଭିଖାରୀ-ବାଣୀ
ପିପାସୀ ଧରଣୀ କଥା ତେଣୁ ଯେହ୍ନେ ଆଣି
ଫୁଟାଏ ସ୍ୱ-ଯାଚନାରେ । ଗାଅ ରେ ଭିଖାରୀ
ତୋ ଗୀତେ ଧରଣୀ-ବ୍ୟଥା ଶୁଣେଁ କାନ ପାରି ।



## ମୋ ଧନ ରେ

ଗାଭି ଯେହ୍ନେ ହମ୍ବାଳଇ ଦୂର ବତ୍ସାପାଇଁ,
ବିରହୀ କପୋତ ଯେହ୍ନେ କାନନ ବଥାଇ,
ହେଲପରି ବନସ୍ପତି ଉବ୍ବକଗଶାୟୀ,
ଖୋଜୁଛି ମୁଁ ତତେ, କାନ୍ଦ ଭୁହାଇ ଭୂହାଇ
ମୋ ଧନ ରେ !

ସହସା ହୋଇଲେ ଅନ୍ଧୀଭୂତ ଚକ୍ଷୁଷ୍ମାନ,
ଏକଗବେ ସର୍ବସ୍ୱାନ୍ତ ହେଲେ ଧନବାନ
ଯେ ବିକଳ ଅନୁଭୂତି ହୁଏ ସମ୍ଭାବିତ
ତୋ ବିହୁନେ ସେହିପରି ବିକଳ ମୋ ଚିତ୍ତ
ମୋ ଧନ ରେ !

ଦୋଳୁଥାଉ ବକ୍ଷସ୍ଥଳେ ସ୍ୱର୍ଣ୍ଣପଦ୍ମ ସମ
ଦରୋଟି ବଚନେ କର୍ଣ୍ଣେ ଦେଉ ସୁଧା ଭରି,
ତୋ ହସ, ତୋ କଉତୁକ, ନୃତ୍ୟ, ଡାକହାକ
ଚିହ୍ନପରି ସ୍ମୃତିପଟେ ଜୀବନ୍ତ ବିବାକ
ମୋ ଧନ ରେ !

ଦୋଳୁଥାଉ ଯେ ବକ୍ଷରେ ସ୍ୱର୍ଣ୍ଣପୁଷ୍ପ ପରି
ସେହି ବକ୍ଷେ ତୋ ଶୀତଳ ଅଙ୍ଗ-ଯଷ୍ଟି ଧରି
ବିଳପି ବିଳପି ଶବ-ଶେଯେ ଯା ଥୋଇଲି
ତୋ ସଙ୍ଗତେ ନିଷ୍ଠୁର ମୁଁ କପାଇଁ ନ ଗଲି,
ମୋ ଧନ ରେ !

ଅନ୍ତରାଳ ହେଉଛୁ ଏବେ ଘୋର ଅନ୍ଧକାରେ
ଅକାଞ୍ଚନ ନିଧି ହଜିଗଲୁ କେଉଁଠାରେ
ଯେତେ ଗତ ହୁଏ କାଳ ତୋ ସ୍ମୃତି ପ୍ରବଳ
ସ୍ଫୁଟତର ହୋଇ କ୍ରମେ କରୁଛି ବିକଳ
ମୋ ଧନ ରେ !

ବୋଲୁଥାଏ ସଦା ତୋର ପଦ୍ମ-ମୁଖେ ଚୁମ୍ବି,
"ଭ୍ରମରେ ଏ ଘରେ ବୋଧେ ଆସିଛୁ ପଳାଇ !
ଦରିଦ୍ର, ଅଧମ ଘରେ ତମେ କି ସମ୍ଭବ !"
ଆସି କିପାଁ ଚୂନା କଲୁ ମୋ ସ୍ନେହ-ଗରବ
ମୋ ଧନ ରେ !

ପାଇ ତୋତେ ପିତା ବୋଲି ହେଲି ଅନୁଭବ
ହୃଦୟେ ବାତ୍ସଲ୍ୟରସ ହୋଇଲା ଉଦ୍ଭବ;
ତୋ ବିନା ସେ ପ୍ରାଣ-ସ୍ତନ୍ୟ ଦେବି ରେ କାହାକୁ
ସ୍ଥାଣୁ ହୋଇ ଚାହୁଁଛି ମୁଁ ଏ ଶୂନ୍ୟ ଧରାକୁ
ମୋ ଧନ ରେ !

କାହିଁ ଅଛୁ ଅନ୍ତରୀକ୍ଷେ, ଜଳେ ବା ପବନେ
ବାଧୁଥିବ ପରା ଶୀତ, ଖରା, ଭାଳେଁ ମନେ,

ବାଧୁଥିବ ପରା କ୍ଷୁଧା, ଖୋଜୁଥିବୁ ସାଥୀ,
କାହା କୋଳେ କାଟିବୁ ତୁ ଘୋର ବର୍ଷାରାତି
ମୋ ଧନ ରେ !

କାହିଁକି ଆସିଲୁ, ସଂଗ୍ରହିଲୁ ନାନା ଆଶା
ଗଲୁ ବା କାହିଁକି ନ ସରୁଣୁ କଥା-ଭାଷା,
ଜନ୍ମାନ୍ତର ବଇର କି ସାଧିଲୁ ରେ ଧନ,
ଭାବୁନ ସମ୍ଭବ ତୋଠି ସେତେ ପ୍ରବଞ୍ଚନ ।
ମୋ ଧନ ରେ !

ପବନ ସ୍ପନ୍ଦରେ ତୋର ଏ ପାପ-ଜୀବନ,
ଚିଦାନନ୍ଦ-ସ୍ୱାଦ ଦିଏ ତୋ ମୂର୍ତ୍ତି-ସ୍ମରଣ
କି ଜାଣି ମା ଆସିଥିଲୁ ମୋହାନ୍ଧ ପିତାର
ଚକ୍ଷୁ ଖୋଲି ଦେଖାଇବୁ ବାସ୍ତବ ସଂସାର ।
ମୋ ଧନ ରେ !

ଧରାରେ ବଞ୍ଚିବା ଲାଗି କର୍ମ ଦୈନନ୍ଦିନ
କରୁଛି ସିନା ମୁଁ, ଅନ୍ତସ୍ତଳେ ରାତି ଦିନ,
ତୋ ଲାଗି ମା ଜଳୁଅଛି ଯକ୍ଷ ଲୋଚକର,
ନୀରବେ ଡାକୁଛି ତତେ ବିକଳ ଅନ୍ତର ।
ମୋ ଧନ ରେ ।



# ରୂପାନ୍ତର

ମିଷ୍ଟାନ୍ନ ତାଆଁରୁ ଯତ୍ନେ ଖୋଜନ୍ତ ଜନନୀ
ସେ ମିଷ୍ଟ ଜଂଜାଳ କ ମୋ ଆଉ ଆସିବନ !
ପଛେ ପଛେ ଲଗିଥାଏ, କରୁଥାଏ ବ୍ୟସ୍ତ
ହାତ ମାରି ଲଣ୍ଡଭଣ୍ଡ କରାଇ ସମସ୍ତ !
ଗାଳ ମାଡ଼େ ତାର ଅବା ଅସମ୍ମାନ କଲ,
— ବ୍ୟାକୁଳେ ଜନନୀ ନେତ୍ରୁ ଅଶ୍ରୁ ପଡ଼େ ଝରି !
ଘରେ ଫେରୁଁ ପରବାସୁଁ ବାପା ଦେଖୁ ନାହିଁ,
ଲବଣ୍ୟ ପ୍ରତିମାଟିଏ 'ବାପା' ବୋଲ ଧାଇଁ,
ଦ୍ୱାରେ ହସି ହେବା ଠିଆ ସ୍ନେହ ପ୍ରତୀକ୍ଷାରେ,
କଏ ତାକୁ ହରିନେଲ ଚକ୍ଷୁ ଅନ୍ତରାଳେ !
ସେ କନୁ ମରି ଯେ ନାହିଁ — ମିଥ୍ୟା ସେ ବଚନ,
ବରଂ ନାହିଁ ରୂପ ଆଉ ସ୍ନେହର ମରଣ ।
ବାହାରେ ସେ ଥିଲା ଯାହା, ପଶିଲା 'ଅନ୍ତରେ,
ଭୋଗିବାକୁ ଯେତେ ସ୍ନେହ ଅଛି ଅନ୍ତସ୍ତଳେ ।
ଆଖି ବୁଜ ଏବେ ତେଣୁ ଜନନୀ ଜନକ
ଦେଖୁଛନ୍ତ ଅହର୍ନିଶ ତା ମଧୁ ନାଟକ ।
ମରି ନାହିଁ, ମରି ନାହିଁ, ଲଭି ରୂପାନ୍ତର
ସେ ଶିଶୁ ପିଉଛି ସ୍ନେହ, ଦୁହିଁଣ ଅନ୍ତର ।

———

## ସାଆଁତମା

ନୟନେ ଲୋତକ ହୃଦରେ କରୁଣା
ଦୀନ ଦୁଖୀ ପାଇଁ ଜନମାସମା,
ବହ୍ନ ଦେଖି ନାହିଁ ମୂରୁଖ ସିନା ସେ
ଦେଖା ମୋ ପ୍ରାଣର ସାଆନ୍ତମା ।

ବିଦୁଷୀ, ରୂପସୀ ରୂପେ ମୁଁ ଭେଟିଛି
ନାରୀକ ଧରାର ଅନେକ ଭାଗେ
କେବଳ ସେହି ସେ ନିରକ୍ଷରାର
ଚରଣ-ଧୂଳି ମୋ ମଙ୍ଗଳ ମାଗେ ।

କ୍ଷୁଦ୍ର ଗାଆଁର ଦୁଃସ୍ଥ, ନିଜ୍ଜନ
ତାହାର ହାତକୁ ଥାଆଁନ୍ତି ଗୁହିଁ
ଖୁଦ, ତଣ୍ଡୁଳ ଯା ମିଳେ ତା ହାତୁ
ପ୍ରସନ୍ନ ମନେ ଫେରନ୍ତି ପାଇ ।

ନଜେ ସେ କନ୍ତୁ ମୂର୍ତ୍ତି ଦୈନ୍ୟ
ପ୍ରସବ ଅନେକ, ନସନ୍ତାନ
ସ୍ୱାମି-ଗଉରବ ଜାଣି ନ ଜାଣିଛୁ,
ବଧବା କରଛୁ ବଧାତା-ବାଣ ।

ତଥାପି ପରାଣେ ତକ୍ରତା ନାହିଁ
ଆପଣା କଷଣ ମରମେ ମାରେ,
ଆଶ୍ରିତ ଜନ ଆଜି, ଆର୍ଦୋଳ
ଉଠଁୁ ବସୁଁ ଖାଉଁ, ନରତେ ଘାଲେ ।

ପିତା-ମାତା-ହୀନ ଶଇଶବୁଁ ମୁଁ ଯେ
ଜନମୀ-ଅଭାବ ଜାଣିନ ଦନେ
ସାଆନ୍ତମା ମୋ ଦ୍ୱିତୀୟା ଜନମୀ,
ଗରଭ-ଧାରୀରୁ ନୁହଇ ଊଣେ ।

ଜଗତ ବୁଲଲ ବଡ଼ଲୋକ ହେଲ
କରମେ ବରାମ ମିଳୁନ ଜମା
ତଥାପି ସ୍ମରଇ ପିଲାଦନ ଅଳ
'ଖାଇବାକୁ ଦଅ ସାଆନ୍ତମା !'

ପ୍ରବାସେ ବଳାସେ ଯାପୁଛୁ ମୁଁ ଦନ,
ଭଗ୍ନ କୁଟୀରେ ଅଛୁ ସେ ପଡ଼ି,
ପୁରାତନ ମାଟି ନାହିଁ ସେ ଗୁଡ଼ବ
ବ୍ୟଥାରେ ମୋ ବୁକୁ ମରେ ଗୁମରି ।

ସ୍ତନ ଗୁଡ଼ ସବୁ ଜନମୀର ଯାହା
ନେଇ ବଢ଼ାଇଲ ଅଧମେ ଏବ୍ଧ
କ ଦେଇ ଶୁଝିବ ଏତେ ତବ ଋଣ ?
କ ପାରେ ଅଧମ ଜୀବନ ଦେଇ ?

ଜନମୀର ସ୍ନେହ ଅଶ୍ରୁଝ ଧାରରେ,
ପୂରୁଷର ମଥା ନୁଅଇଁ ସେଥି,
ଜୀବନେ ଜୀବନେ ତମ ପାଦଧୂଳି
ଦଅ ସାଆଁ ତମା କପାଳେ ଲେଖି ।



# ଶେଲୀ-ମୃତ୍ୟୁ

—୧—

ନରଜନ ଭେଲାବାସେ ପତି-ପ୍ରାଣା ମେରୀ ଅଛି ଗୃହିଁ,
ସାତ ଦିନ ଗଲାଣି ଯେ, ଶେଲୀ ତାର ନ ଆସେ କିପାଇଁ ?
ପର ଉପକାର ଲାଗି, ଭୁଲେ ସେ ଯେ ଭୋଜନ, ଶୟନ,
ପିସା ନଗ୍ରେ ରହିଲା କି, କରିବାକୁ କା ଦୁଃଖ ମୋଚନ ?
ଅଥବା — କମ୍ପଇ ପ୍ରାଣ, ମେରୀ ହୃଦେ ହେଲେ ସେ ଭାବନା —
ବରାପି ବାରିଧି-ବକ୍ଷେ ଘଟିଲା କି କିଛି ଦୁର୍ଘଟଣା ?

ମନୁଷ୍ୟ ତ ନୁହେଁ ଶେଲୀ — ନରଦେହେ ଶିଖା ପ୍ରକୃତିର,
ତେଣୁ ଜଳେ, ବନେ, ସ୍ଥଳେ, ବୁଲେ ଶେଲୀ ନିରତ ଅସ୍ଥିର ।
ପ୍ରକୃତି ପରି ସେ ବନ୍ୟ, ପ୍ରଭଞ୍ଜନ ପରି ସେ ଚଞ୍ଚଳ,
ରୂପ ଆଉ ପ୍ରେମ ଖାଲି ବାନ୍ଧିଅଛି ତା ପଦେ ଶୃଙ୍ଖଳ ।
ମାନସୀକୁ ରଖି ପାଶେ, ଶେଲୀ ଗୃହେଁ ପ୍ରେମର ବନ୍ୟାରେ
ଭସାଇ ଏ ରୁକ୍ଷ ଧରା, ଗଢ଼ିବ ତା ସ୍ୱପ୍ନ ଅନୁସାରେ ।

କିନ୍ତୁ ଭଙ୍ଗିଅଛି ସ୍ୱପ୍ନ—ମାନବର ଶୁଭ ଅଭିଳାଷୀ,
ମନୁଷ୍ୟର ଦୀନତାରେ ନିଷ୍ପେଷିତ, ସେ ସ୍ୱପ୍ନ-ବିଳାସୀ ।
ପକ୍ଷାହତ ପକ୍ଷୀ ପରି ଉଡ଼ିବାର ବାସନା ଶେଲୀର
ଅଧିକୁ ଅଧିକେ ବଢ଼େ, ହେଉ ପଛେ ବିକଳ ଶରୀର ।
ମେରି ମନା ନ ଘେନ ସେ କ୍ଷୁଦ୍ର ଏକ ସୁଲୁପ ତିଆରି,
ଅକୂଳ ବାରିଧି-ବକ୍ଷେ ଦିନାକେତେ ହେଉଅଛି ପାରି ।
ସୁକୁମାର ତନୁ ତାର, ସନ୍ତରଣ ଜାଣେ ନା ତା ବାହୁ,
ତଥାପି ସେ ଭୟ-ହୀନ—ରୁଦ୍ର ପଛେ ହେଉ ସିନ୍ଧୁବାୟୁ,
କ୍ଷୁଦ୍ର, ଟଳମଳ ନାବେ, ନିରୁଦ୍‌ବେଗେ ପଢ଼ୁଥାଏ ଶେଲି
ବିତାସି-ବ୍ୟାକୁଳ ଜଳେ କାବ୍ୟ ଅବା ଦରଶନ ମେଲି ।

ସେଦିନ ସେ ଯାଇଥିଲା ବନ୍ଧୁ ଲାଗି ଅର୍ଥ ଆନୟନେ
ଲେଗର୍ଣ୍ଣ ନଗରେ, ସେଇ କ୍ଷୁଦ୍ର ନାବେ; ମେରିର ନୟନେ
ଆଶଙ୍କାର ବାଷ୍ପ ରଚି । ନ ଫେରୁଁ ସେ ଏତେ ଦୀର୍ଘ କାଳ,
ନିରଜନ ବେଳାଗୃହେ ଉଦ୍‌ବିଗ୍ନ ମେରିର ସଂସାର ।

— ୨ —

କ୍ରମେ କ୍ରମେ ଗଲା ଜଣା, ମେରି ପାଶେ ଫେରିବାକୁ ଭରି
ଲେଗର୍ଣ୍ଣୁ, ଅବେଳେ ଶେଲି ମେଲିଦେଲା ତା ନାବ ଦଦରି ।
ମଧ୍ୟପଥେ, ସିନ୍ଧୁଝଡ଼େ କ୍ଷୁଦ୍ର ନାବ ଯାଇଅଛି ଦବି ।
ନିର୍ମମ ପ୍ରକୃତି ହାତେ ମରିଅଛି ପ୍ରକୃତିର କବି ।
ମେରି ବୁଲେ ଏଣେତେଣେ, ସହଜେ ତା ନ ହୁଏ ବିଶ୍ୱାସ,
ସିନ୍ଧୁର ନିଷ୍ଠୁର ମୁଖୁଁ ପଳାୟନେ ତା ମୂଢ଼ ପ୍ରୟାସ ।

ଏଣେ କିନ୍ତୁ ବେଲାଦେଶେ ଶବ ଏକ ଆସିବାର ଭସି
ସମ୍ବାଦ ଆସିଲା କାଲେ । ସତ୍ୟ-ମିଥ୍ୟା-ଦେଖା-ଅଭିଳାଷୀ,
ଟ୍ରେଲାନି, ଶେଲୀର ବନ୍ଧୁ, ଥାନେ ଯାଇ ଓଟାରିଲେ ଶବ
ଜଳୁଁ ବେଳା-ବାଲୁକାରେ; ଯା ଦେଖିଲେ ତାହା କି ସମ୍ଭବ ?
ଏହି କି ଶେଲୀର ଦେହ ? ଘୃଣ୍ୟ ମଡ଼ା, ବୀଭତ୍ସ ଆକାର
ଅନାବୃତ ମୁଖ ହସ୍ତ ହୋଇଅଛି ମତ୍ସ୍ୟର ଆହାର !
କିନ୍ତୁ ଏ ଶେଲୀର ଅଙ୍ଗା, ପକେଟରେ କୀଟ୍‌ସର କବିତା
ଇତାଲିର ସମୁଦ୍ରରେ ଝଡ଼େ ବସି କିଏ ପଢ଼ିବ ତା ?
କିବା ମୃତ୍ୟୁ କି ଜୀବର ! କି ଦେହର କିବା ପରିଣତି,
ପୂର୍ଣେନ୍ଦୁ ଗୋଲାପ ଗୋରୁ-ଖାଦ୍ୟ କଲା ନିର୍ବୋଧ ପ୍ରକୃତି ।
ଶେଲୀର ସେ ନୀଳ ଆଖି ଗ୍ରୀଷ୍ମ-ନଭ ପରି ଯା ଗମ୍ଭୀର,
ତାର ସେ ଶରୀର-ଯଷ୍ଟି ଯହିଁ ଥିଲା ଶୋଭା କୁମାରୀର;
ଶେଷେ ସେ ସମୁଦ୍ର ପଙ୍କେ ହେଲା ଜଳ-ଜୀବର ଆହାର
ହେବାର ଘୃଣିତ ମଡ଼ା, ହେଲା ରୂପ-ପୂଜା ପୁରସ୍କାର ।
ମନୁଷ୍ୟକଲ୍ୟାଣ ପାଇଁ ଉତ୍ସର୍ଗିତ କଲା ଯେ ଜୀବନ
ଘରୁ ପିତାମାତା ତାକୁ, ଦେଶୁଁ ଜାତି କରିଲେ ତାଡ଼ନ ।
ବିତାଡ଼ିତ, ଆଘାତିତ ପ୍ରାଣୀ ପରି ସ୍ୱର୍ଗର ଏଞ୍ଜେଲ୍
ମଲା ଶେଲୀ ନିର୍ଯ୍ୟାତନେ, ପାଇ ପାଇ ମନୁଷ୍ୟର ଶେଲ ।

— ୩ —

ସବୁ କି ହୋଇଛି ବ୍ୟର୍ଥ ?
ନାହିଁ ମୂଲ୍ୟ ଶେଲୀ-ଜୀବନର ।
କେ କହେ ତା ? ଶେଲୀ ରଖି—
ଯାଇନି କି କିଛି ଅନଶ୍ୱର ?

ସତ୍ୟ ନ୍ୟାୟ ଲାଗି ଏବେ, ଯିଏ ଯହିଁ ହୁଏ ନିର୍ଯ୍ୟାତିତ
ସେ ଏକ ଜୀବନ୍ତ ଶେଲୀ—ପ୍ରମିଥିଅସ୍ ଖ୍ରୀଷ୍ଟ-ବିବର୍ଜିତ ।
ତୁମେ ଶେଲୀ, ଦେଖାଇଛ କବି କିସ ହେବାର ଉଚିତ—
କବି ଖାଲି ନ ରଚିବ ମଦ-ଓଠ-ସୁଆଦ ସଙ୍ଗୀତ ।
ବିଦ୍ରୋହୀ ସେ, ଜଗତର ହୀନ, ଦୁଃସ୍ଥ, ଦଳିତର ବନ୍ଧୁ,
ତା ଲେଖନୀ ଅଶ୍ରୁ ତେଜେ, ନେବ ଟେକେଇ ଭାରୀ ଜନସ୍କନ୍ଧୁଁ !
ସ୍ୱାର୍ଥହୀନ, ପାପହୀନ, ସତ୍ୟସନ୍ଧ, ଊର୍ଦ୍ଧ୍ୱଗ ଜୀବନ
ରୂପପାୟୀ, ପ୍ରେମମୟ, ନରେ-ଜୀବେ-ନିରତ-କରୁଣ ।
କବିର ଏ ଛବି ଶେଲୀ, ଦେଶେ ଦେଶେ ସାହିତ୍ୟେ ସାହିତ୍ୟେ,
ତୁମଲାଗି ବ୍ୟାପିଅଛି, ଭାଷା ଆଉ ମାନବର ହିତେ ।
ତୁମ ଦୁଃଖ, ତୁମ କଷ୍ଟ, କ୍ରମେ କ୍ରମେ ଲଭେ ସଫଳତା
ସେବର ନଗଣ୍ୟ ଶେଲୀ, ଆଜ ବିଶ୍ୱକାବ୍ୟର ଦେବତା ।



# ହତସ୍ୱପ୍ନାର ପତ୍ର

ଦିନ ଥିଲା ଯେବେ ତୁମ ପତ୍ର ପାଇବାରେ,
ତୁମକୁ ଦେବାରେ ଭାଷା, ମୋ କ୍ଷୁଦ୍ର ସଂସାରେ
ଥିଲା ପ୍ରିୟତମ ସୁଖ । ମନେ ପଡ଼େ କିକ
ତୁମେ ମଧ ରହିଥାଅ କେସନେ ପ୍ରତୀକ୍ଷି,
ମୋ-ହାତର କୁଳଗିତ ପତ୍ର ଫାଳେ ପାଇଁ,
ଚାହିଁଥିଲା ଚାହିଁ ଯଥା ଚୋକନେ ଅନାଇଁ !
ମନେ କର, ଇ ଭିତରେ ଗଲା କେତେ କାଳ
ଦୁହେଁ ଦୁଃଖେ ଦୂରେ ଦୂରେ ବିରହ-ବିହାର
କଲେ ମୌନ ଅଭିମାନେ; କୁଶଳ ଜିଜ୍ଞାସି
ଦୁହେଁ ନାହିଁ ଦେଲୁଁ ପତ୍ର ଅହଂକାରେ ଭାସି ।
ସେଦିନ ପ୍ରଣୟି-ଯୁଗ୍ମ ପ୍ରୀତି-ଜରଜର
ଆଜ ଶୁଷ୍କ, ପରସ୍ପରେ ନିଃସ୍ପୃହ-ଅନ୍ତର ।
ଶୁଖି ଶୁଖି କିନ୍ତୁ ଶେଷେ ଫାଟିବା ଆଗରୁ
ତୁମକୁ ଶୁଣାଇ ଯାଏଁ ମୋ ବ୍ୟଥା ଅନ୍ତରୁ ।
ସେଲାଗି ଏ ଶେଷ ପତ୍ର । ସେ ଘରେ ଶୟାନ
ସୁଖେ ତୁମେ; ଲେଖୁଛୁ ମୁଁ ନିଷ୍ପୀଡ଼ିତ-ପ୍ରାଣ;
ମୋ ଆଖିରେ ନିଦ ନାହିଁ, ଅଶ୍ରୁ ମଧ ନାହିଁ
ପୋଛୁ ଚୁମୁଥିଲ ଯାହା ତୁହାଇ ତୁହାଇ ।

ପିଲେ ମୋର ଶୋଇଛନ୍ତି — ଶେଷ ଶାନ୍ତି ମମ,
ତାଙ୍କ ଯୋଗୁ ପାଏଁ ହେଲେ ଜନମା-ସମ୍ଭ୍ରମ ।
କି ଆଉ ଲେଖିବି ସତେ ?—ସକଳ ସ୍ୱପନ
ଭାଙ୍ଗିଲି ତ; ଖାଲି କରେ ଗୋଟିଏ ପ୍ରଶନ ।
କିଶୋର ବୟସେ ତୁମେ ବକ୍ଷେ ଘେନି ମତେ,
କହିଥିଲ ଭଲ ପାଅ ପ୍ରତି ଚୁମ୍ବ ଅନ୍ତେ;
ସେ କି ଖାଲି ଗୃହଟୁ କଥା, ଭୁଲାଇବା ପାଇଁ
କିଶୋରୀରେ ? ତହିଁ ତବ ପ୍ରାଣ ଥିଲା ନାହିଁ ?
କିମ୍ବା ଲଘୁ ଆମୋଦର ସେ ଛଳନା-ବାଣୀ
କି ଗଭୀର ରେଖାସବୁ ଦେଇଅଛି ଟାଣି
ସେଦିନୁଁ ଏ ବାଳିକାର ଅନ୍ତର ନଭରେ,
ବିଳାସୀ ପୁରୁଷ ତୁମେ ଜାଣ କି କିଅଁତେ ?
ଜାଣିଥିଲେ କି ହେ ପ୍ରିୟ ସେଦିନର ସେହି
ଶରତର ପରମ ସ୍ୱପ୍ନ, ଅନ୍ତରର ସ୍ନେହୀ,
ମରମର ସ୍ନେହଧାରା, ଶରୀରର ଲତା
ଉପେକ୍ଷିତ ଅନାଦରେ ଭୂତଳେ ଲୋଟନ୍ତା ?
ଯେ ସ୍ନେହ-ସାମ୍ରାଜ୍ୟେ ଗରବିଣୀ ଅଧୀଶ୍ୱରୀ
ହେବାର ସ୍ୱପ୍ନରେ ଶତ ଯାଉଥିଲା ଥରି,
ତାହାର ଅଜ୍ଞାତ କୋଣେ ଶୁଷ୍କଲତା ପରି
ପଡ଼ିଥାନ୍ତି ମୁଁ କି ଖାଲି ଅଶାନ୍ତ ସୁମରି !
କିଶୋର ବୟସେ ଯେବେ ଦେହ, ମନ, ପ୍ରାଣ
ଭକ୍ତିଭରେ କରି ବନ୍ଧୁ-ନାମ ଉଚ୍ଚାରଣ,
କଲି ଯା ଉତ୍ସର୍ଗ ତବ କରେ ଆଶାନ୍ୱିତା
ତା ଫଳ କି ଏଇ ପ୍ରିୟ ? ଏ ହୀନ ଦୀନତା ?

ତବ ବିନୁ ଆନ ବନ୍ଧୁ ଜାଣି ନାହିଁ ମନ,
ତୁମଠୁ ଶୁଣିଲ ଯେତେ ନିଷ୍ଠୁର ବଚନ !
ତୁମ-ଯୋଗ୍ୟ ନୁହେଁ ଯଦି ଦେନିଲ କପାଇଁ,
ପିଇଲ ମୋ ଗଣ୍ଡୁ, ମୋର ମିଥ୍ୟା-ସ୍ତୁତି ଗାଇ ?
ବିଳାସେ ରସାଳ ଖାଇ ପିଙ୍ଗା ବୀଜ ପରି
କଣୋଷି ହୋଇଛୁ ଆଜ ଅପଗତ-ଶିଖି,
ଶରୀର-ସ୍ତାବକ ପୁଂସ ତେଣୁ କି ଉପେକ୍ଷା,
ଆତ୍ମାର ଏକାନ୍ତ ପୂଜା ନ କଲ ଅପେକ୍ଷା ?
ତବ ପାଶେ ଆନ କେ ଷେ ବିନିଦ୍ରଯାମିନୀ
ଅଶ୍ରୁସିକ୍ତ ଉପାଧାନେ ଏ ହତଭାଗିନୀ
କାଟେ ଦିନ ଦିନ ଧରି, ଜାଣି ଜାଣ ନାହିଁ
ମୋ ପାଇଁକି ହୃଦୟ ଦେଲ ପାଷାଣରେ ଥୁଇ ?
ବିଧାତା ମୋ କୋଳେ ଯାହା ଥୋଇଛୁ ଖେଳନା
ଜୀବନ ଧରିଛୁ, କରି ତାଙ୍କର ମାଜଣା ।
ତୁମ ଗୃହ ବୁଝିଥାନ୍ତେ ଦାସୀ, ନଉକର,
ମୁଁ ବି ପାରିଥାନ୍ତି ଜନ୍ମି ଜାରଜ କୁମର,
ତୁମଠାରେ କଲି କପାଁ ଆତ୍ମସମର୍ପଣ,
ତା ଗୌରବ ବୁଝିଲନ, ଏଡ଼େ ମୂର୍ଖ କଣ ?
ଯା ହେବାର ହେଲା, ଯାହା ଥିଲା ଏ କପାଳେ
ଭୋଗିଲି, କି ଲାଭ ସ୍ମରି ତାହା ବାରେ ବାରେ !
ଜନମୀ, ଗୃହିଣୀ ସିନା, ପ୍ରିୟା ନୁହେଁ ଆଉ
ବୁଝି କି ନାରୀର ଏହା କେତେ ବଡ଼ ଦାଉ ?



# ଦ୍ୱନ୍ଦ୍ୱ

ଜ୍ଞାନ ଯା କହେ କରନା କରନା
ମନର ତହିଁ ବିଶେଷ ଅନୁରାଗ
ଜବାବ୍ ଦିଏ 'ଇଚ୍ଛା ହେଲା କପାଁ
ବୁଝାଇ ମତେ ଉତ୍ତର ଦିଅ ଆଗ ।'
କହଇ ଜ୍ଞାନ "ପାପ ରେ ଭାଇ ତାହା"
କହଇ ମନ "ଖାତିର୍ ନାହିଁ କରେ
ବିଧାତାକୁ ପଚାର ଯାଇ ଆଗେ
ପାପକୁ କିପାଁ ମିଠା-ମଧୁର୍ କଲେ ।"

ବୁଝାଏ ଜ୍ଞାନ "ନିନ୍ଦା ଦେବେ ଲୋକେ"
କହଇ ମନ "କି ସାଧୁ ସେମାନେ !"
"ନରକେ ଯିବୁ" କହିଲେ ହସି କହେ
"ଦେଖିବି ମୁହିଁ ସକଳେ ସେ ଥାନେ ।"

ମନ, ଜ୍ଞାନର ଏପରି ଠଣାଠଣି
ନିରନ୍ତର ଚାଲିଛି କ୍ଷଣେ କ୍ଷଣେ
କହିଲେ ଜ୍ଞାନ "ଛି ଛି" କାହିଁପାଇଁ
"ଚମତ୍କାର !" କହଇ ଆନ ଜଣେ ।

ଦୁଇର ଦ୍ୱନ୍ଦ୍ୱେ ମୁଁ ହୁଏଁ ଖାଲି ଦଳି
ଭୁବନ ବନେ ଧାଉଁଛି ଲକ୍ଷ୍ୟହୀନ ।
ଶ୍ରେୟ ପ୍ରେୟର ବାଛବିଚାର ହେଉଁ,
ଅସ୍ତପ୍ରାୟ କ୍ଷୁଦ୍ର ଏ ଜୀବନ ।

ବନ୍ୟାଜଳେ ଶୁଖିଲା ଘାସ ପରି
ବିଧାତା, ମତେ କଲ ଯେ ଶୂନ୍ୟ-ବଳ
ବିଚାର ବେଳେ ସାକ୍ଷୀ ହେବେ ମୋର
ମନ, ଜ୍ଞାନ ସମ୍ମୁଖେ ତୁମ୍ଭର ।

ପାତକ ନାହିଁ, ପୁଣ୍ୟ ନାହିଁ ମମ,
ମୁଁ ଖାଲି ଏକ ଅନୁଭୂତିର ମାଳା
ହସ, ଲୁହର ବିଚାର କରିବାକୁ
ରଖିଛ କହେ ବେତ, ଆଉ କାରା ?



# ପ୍ରାଣର ବାପୁଜୀ

ତମ ନେଇ ଯେତେ ଯୁକ୍ତିତର୍କ
ସବୁ ଆଜ ଅବସାନ,
ପ୍ରାଣର ବାପୁଜୀ,
ଆଜି ପ୍ରାଣେ ଖାଲି,
ଅଶ୍ରୁ ଓ ସମ୍ମାନ ।

ଜୀବନେ ତମକୁ ଲଦୁ ବତ୍ସରଙ୍କୁ
ସବୁଥିରେ ଅଙ୍କୁ ଫାଁକ,
ତବ ଉପଦେଶ ଦଳଙ୍କୁ ଚରଣେ
ଉଓସ୍ତ ତବ ଢାଁକ ।

ଆଉ ନାହିଁ, ଆଉ ନାହିଁ,
ଏଥର ଜୀଇବା, ଜୀଇବା କେବଳ
ବାପୁଜୀ, ତମର ପାଇଁ ।

ପଳ ପଳ କରି ଆମରି ପାଇଁକି
ଶରୀର, ରକ୍ତ ଦେଲି,
ଦେଖି ନି ଆଖିରେ ପାଷଣ୍ଡ ଆମେ
ଭାବୁଥାଉଁ ସବୁ ଗଲି ।
ତୁମରେ ଦେଇନୁ କଷ୍ଟ
ସରମେ ବାପୁଜୀ, ଆମରି ଆତ୍ମା
ଆମକୁ କରଇ ଛି ଛି ।

ଫାଁକି ଦେଇ ଯାହା ଗଲି ଭୁଲି, କୋଟି-
ହୃଦୟ ଦେଇଛ ଦଳି,
ସବୁ ଅନୁତାପ, ସବୁ ଅପରାଧ,
ଲୋତକେ ପଡୁଛି ଗଳି ।

ନର ତୁହି ଆଜ,
ହୋଇଅଛ ନାରାୟଣ,
ଏକ ଥିଲ, ଆଜ ବିଶ୍ୱ ବ୍ୟାପିଲ
ହେ ସତ୍ୟ-ପରାୟଣ !

ବାହାରେ ଯା ଥିଲ, ମରଣେ ବାପୁଜୀ
ଅନ୍ତର ଗଲ ମାଡ଼ି,
ତୁମେ ନି ଆମର ବିବେକ ଏଥର,
ଦୁର୍ଗମେ ପ୍ରତିହାରୀ ।
ଆମ ପୁଅଝିଏ ତବ,
ଶମଶାନୁ ତବ ଫେରୁଛୁ ବାପୁଜୀ, ଧରି ଏହି ଆଶା ନବ ।

ଯୁଗେ ଯୁଗେ ତମେ ହୋଇଛ ରସୁଲ୍ ,
ମେସାଇୟା ଅବତାର
ଏଥରକ ପର ହୃଦୟବଲନ
କର ନାହିଁ କେଉଁ ବାର ।

ସତ୍ୟ ଶିବର ହେ ମହା-ପୂଜାରୀ, ଯାର
ଅସତ୍ୟ ଆମେ, ଅପୂର୍ଣ୍ଣ ଆମେ;
ଲାଜେ ଅନୁତାପେ
ଦେଉଁ ଖାଲି ଆଖି-ଧାର ।



## ଦିଅ ଛାଡ଼ି ତାରେ

ବାପୁଜୀ କରନ୍ତେ ଯାହା, ସ୍ମର ତାହା ପଣ୍ଡିତ ନେହରୁ,
ଛାଡ଼ିଦିଅ ସେ ଘାତକେ, ମୁକ୍ତାକାଶ ତଳେ ବସି ଝୁରୁ,
ସେ ନବୋଧ; କଳଙ୍କିତ ମାୟାଚ୍ଛନ୍ନ ପାପ ଆପଣାର,
ଅନୁତପ୍ତ ଲୁହ ପଡ଼ୁ, ନ ପଡ଼ୁ ତା ଶୋଣିତର ଧାର
ଏହି ସେ ମାଟିରେ, ଯାହା ପବିତ୍ରିତ ବାପୁଜୀ-ଶୋଣିତେ,
ବାପୁଜୀଙ୍କ ଆତ୍ମା କରୁ ସଇତାନ-ମୁକ୍ତ ତାର ଚିତ୍ତେ ।

ପତାକାରେ ଯହିଁ ଥରେ । କଲେ ଯେଉଁ କ୍ଷମା ମହାମନେ
ତାହାରେ କଲ ଯେ ନାଶ ପ୍ରିୟ-ପୁତ୍ର ପଲାଶ-ଲୋଚନେ,
ଧର୍ମ-ଚକ୍ର ଲେଖାଅଛୁ ପରା ସେହି ଧର୍ମାଶୋକଙ୍କର
ଦଣ୍ଡଠାରୁ ଦୟା ବଡ଼, ସ୍ମର ତାହା, ତାରେ ମୁକ୍ତ କର ।

ଘୃଣାର ତଳେ ସେ ଜୀବ, ସେ କେବଳ କୃପାର ଭାଜନ
ଛାଡ଼ିଦିଅ, ନ କରୁ କେ ତାର ଆଉ ନାମ ଉଚ୍ଚାରଣ ।
ବାପୁଜୀଙ୍କି ପାଇବା କି ଏହିପରି କୋଟି କୀଟ ନାଶି ?
ପଣ୍ଡିତ ନେହରୁ, ତବ କୃପା ହେଉ ତାର ଯୋଗ୍ୟ ଫାଶୀ ।

---

## ଭାରତ ପୁତ୍ର

ମୁକୁଟମଣ୍ଡିତ ଶିର ନୁଏଁ ଯହିଁ ଦାରିଦ୍ର୍ୟ-ଚରଣେ,
ନାମ ଯହିଁ ମୁଖେ ହୁଏ ଅବଲୁପ୍ତ ପୁଣ୍ୟ-ଆଚରଣେ,
ଧର୍ମ ଯହିଁ ବିରାଟରେ ମଗ୍ନ କରେ କ୍ଷୁଦ୍ର ଅହଙ୍କାର,
ଭଗବାନ ଯହିଁ ସତ୍ୟ, ଜ୍ଞାନ ଆଉ ଆନନ୍ଦର ଧାର,
ଜ୍ଞାନ ଯହିଁ ଖାଲି ତାହା ଶିଖାଏ ଯା ଆତ୍ମ-ଉନ୍ନମନ,
କର୍ମ ଯହିଁ ଦିଏ ଫଳ, ନାହିଁ ରଖି ବାସନା-ବନ୍ଧନ,
ରାଷ୍ଟ୍ର ଯହିଁ ତପୋବନ, ଶାସକର ସାଧନାର ପୀଠ
ହୀନତମ ଯହିଁ ପ୍ରଜା ମହତ୍ତମ କର୍ମେ ଲଭେ ଇଷ୍ଟ,

ଜନମ ଲଭିବା ଯହିଁ କଲ୍ୟାଣର ମହତ ପରୀକ୍ଷା,
ଭୋଗରେ ହିଁ ଥାଏ ଯହିଁ ସଂଯମ ଓ ସମର୍ପଣ ଦୀକ୍ଷା,
ଈଶ୍ୱର-ଚର୍ଚ୍ଚିତ ଯହିଁ ଜୀବନର ସମସ୍ତ କରମ
ସତ୍ୟରୂପେ ସମ୍ମାନିତ ଯହିଁ ସର୍ବ ପୂଜା ଓ ଧରମ,
ବାପୁଜୀ, ସେ ଭାରତର ତୁମେ ଅଟ ଜୀବନ୍ତ ପ୍ରତୀକ
ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଏକାଧାରେ ଶୂଦ୍ର ଓ ଯାଜ୍ଞିକ ।

———

# ଅଗଷ୍ଟ ପନ୍ଦର

(୧୯୪୮)

ଅଗଷ୍ଟ ପନ୍ଦର ଆଜ,
ଫେରାଇଛୁ ପୁଣି ସମ୍ବତ୍ସର
ସେହି ସେ ଦିବସ, ଯାର ପଦପାତ ଆନନ୍ଦ-ଚଞ୍ଚଳ
ଭାରତର ମୁକ୍ତି-ଛନ୍ଦେ । କପାଳରେ ତିଳକ ଯାହାର
ଭାସ୍ୱର ବିଜୟ-ଗର୍ବେ; ବକ୍ଷେ ସ୍ୱପ୍ନ-ମାଳ ।
ଏଇତ ସେ କାଲି ପରା — ଯେବେ ତାର ଜନ୍ମର ନର୍ତ୍ତନେ
ଭାଙ୍ଗି ଘୃଣା-ବ୍ୟବଧାନ, ହେଲେ ବଦ୍ଧ ଦୃଢ଼ ଆଲିଙ୍ଗନେ
କୋଟି କୋଟି ପ୍ରାନ୍ତବେଣୀ; ଚିହ୍ନାଙ୍କିତ ପତାକାର ତଳେ
କୋଟି କୋଟି ଜନସଂଘ ଠିଆହୋଇ ମୁକ୍ତ-ମାଟି ପରେ
ଗାଇଲେ ଉଦାତ୍ତ କଣ୍ଠେ, "ଜୟ ହିନ୍ଦ୍, ଗୋ ପ୍ରିୟ ଜନନୀ,
ଶୃଙ୍ଖଳ ଖସିଛି ପଦୁ, ନିଜ ଘରେ ତୁ ପୁଣି ଘରଣୀ ।
ଉଠ ମା ଆଦେଶ ଦିଅ, କୋଟି କୋଟି ଆମେ ପୁଅ ଝିଅ
ଦେବୁ ମଥା ତୋର ଲାଗି;—ଏ ପତାକା ହେଲା ପୂଜ୍ୟ, ପ୍ରିୟ ।
ଆମେ ଆଜ ଧନହୀନ, ନାହିଁ ବସ୍ତ୍ର, ନାହିଁ ଖାଦ୍ୟ, ବାସ,
ବହିଆଡ଼ୁ ନିଷ୍ପେଷିତ, ନାହିଁ ଥିଲା ଚିତ୍ତେ ଆମ ଆଶ;
ଆଶାର ବର୍ତ୍ତିକା ଦେଲେ ଜାଳି କୋଟି ଉପେକ୍ଷିତ ପ୍ରାଣେ
ଏଇ ସେ ବାପୁଜୀ........"

ହାୟ, ସେ ଶବ ଯେ ଅଶ୍ରୁ ନେବେ ଆଣେ
ଆଜ ଏ ଉତ୍ସବ ବନେ ! କାହାନ୍ତି ସେ ପ୍ରାଣର ଗାନ୍ଧୀଙ୍କ
ଆମ ହାତେ ଥୋଇଗଲେ ଯେହୁ ଏହି ଅସମ୍ଭବ ସିଦ୍ଧି !
ଅସ୍ପୃଶ୍ୟ, ଅସହାୟ, ଉପୃଷ୍ଠ ଘାସ ଜନତାଙ୍କ
ବକ୍ଷରେ ଯେ ଜଳେ ଆଶା, ସ୍ୱପ୍ନ, ବୁଦ୍ଧି, ସଙ୍କଳ୍ପ ସଂସ୍କାର,
ଘୃଣିତ ଯେ ଥିଲେ କାଲି, ଉପୃଷ୍ଠ ନିଜ ମାଟି ପରେ
ସେ ଆଜ ସମ୍ରାଟ୍ ଚକ୍ରୀ, ଦୃପ୍ତମଧ୍ୟ—ଯାଙ୍କ ମନ୍ତ୍ର ବଳେ;
ସବଂଶଳ୍କ ଯେ ସନ୍ନ୍ୟାସୀ ସାମ୍ରାଜ୍ୟର ଦର୍ପ କରି ଚୂର୍ଣ୍ଣ
ନାନା ଦାନେ ଆମ ଡାଲି ଅଯାଚିତେ କରିଗଲେ ପୂର୍ଣ୍ଣ,
ଚାଲ ସେହି ସନ୍ନ୍ୟାସୀଙ୍କ ଶ୍ରୀଲେ ଦେବା ଭକ୍ତିର ଚନ୍ଦନ,
ଆସ ମହା ହିନ୍ଦୁସ୍ଥାନ ପୁଣ୍ୟପଦ କରିବା ବନ୍ଦନ ।

ହାୟ, କିନ୍ତୁ ନାହାନ୍ତି ସେ !

କାହାନ୍ତିରେ ପ୍ରାଣର ବାପୁଜୀ ?

ପର୍ବ୍ଭର ତ ହିମାଚଳେ, ପୁଚ୍ଛ ଗଙ୍ଗା – କହିବେ ବା ବୁଝି !
ପୁଚ୍ଛ ଏ ବିରାଟ ନଭେ, ପୁଚ୍ଛ ଯାଇ ଉନ୍ମତ୍ତ ସିନ୍ଧୁରେ
ପୁଚ୍ଛ ବିନ୍ଧ୍ୟେ, ପୁଚ୍ଛ ତାପ୍ତୀ, ପୁଚ୍ଛ ପୁଣି ମହାନଦୀ କୂଳେ ।
କହିବେ ସକଳେ ମିଳି—"ହିନ୍ଦୁସ୍ଥାନ, ତୁ ଯେ ଅଭିଶପ୍ତ
ଯେ ଦେଲା ତୋ ଲାଗି ସବୁ, ତାକୁ ମାରି ପିଇଲୁ ତା ରକ୍ତ !
ପ୍ରେମର, ସ୍ୱର୍ଗର ରାଜ୍ୟ ଥାପିବାକୁ ଚାହିଁ ତୋ ମାଟିରେ
ତାକୁ ତୁ ବଧିଲୁ ବନ୍ୟପଶୁ ପରି ପାଷଣ୍ଡ ଗୁଳିରେ !

ଆମେ ହେଲୁ ଧନ୍ୟ ଧନ୍ୟ ପୁଣ୍ୟ ତାର ଅଙ୍ଗ-ଅଣୁରାଶି,
ସ୍ପର୍ଶ ତାର ଜଳ, ମାଟି କରିଅଛୁ କଳ୍ମଷ-ବିନାଶି ।
ଗାନ୍ଧିର ନିଷ୍ଠୁର ହତ୍ୟା ହୋଇନି ସେ ଥରକରେ ଶେଷ,
ତମେ ପୁଣି ପ୍ରତିଦିନ ଦିଅ ତାକୁ ନୃଶଂସ-ବିଦ୍ଧ କ୍ଳେଶ ।
ଶୁଣ ଶୁଣ ଭାରତର ନରନାରୀ ଜନସାଧାରଣ
ମିଥ୍ୟା ଭାଇ କହ ଯାହିଁ, କର ଯାହିଁ କେ କାହେ ଶୋଷଣ,
ଯହିଁ ହିଂସା, ଯହିଁ କ୍ରୋଧ, ଯହିଁ ଉଦେ ସାମାନ୍ୟ ଅନ୍ୟାୟ
ତହିଁ ତହିଁ ତତ୍‌କ୍ଷଣେ ଗାନ୍ଧି-ହତ୍ୟା ହୁଏ ଇଚ୍ଛାବହ ।
ହେ ଭାଇ, ଦେଖ ଏ ଜଳ, ବାୟୁ, ମାଟି, ନଦୀ, ବନ, ନଭ
ପ୍ରକୃତିରେ ଦେଖ କେଉଁେ ପ୍ରଣୟରେ ଆଲିଙ୍ଗନବଦ୍ଧ,
ତୁମେ କପାଁ ସୃଷ୍ଟି କର ସମାଜରେ ନାନା ଭେଦାଭେଦ
ଖ୍ରୀଷ୍ଟାନ, ମୁସଲମାନ, ଜାତି, ଗୋଷ୍ଠୀ, ବାଇବେଲ, ବେଦ ।
ସ୍ମର ଭାଇ ଗାନ୍ଧିବାଣୀ—ପ୍ରେମେ ହୁଅ, ଗୋଟିଏ ମାନବ
ପରସ୍ପରେ ନାହିଁ ଧ୍ୱଂସି କର ସ୍ୱର୍ଗ-ରାଜ୍ୟର ଉଦ୍ଭବ ।”

ବନ୍ଦକର ବାଦ୍ୟତାନ, ବନ୍ଦକର ଜନ୍ମଓ ଉତ୍ସବ
ଖୋଜ ଖୋଜ ହିନ୍ଦୁସ୍ଥାନ ବାପୁଜୀଙ୍କୁ ଅନ୍ତରରେ ତବ ।
ଅଶ୍ରୁହିଁ ଯଥେଷ୍ଟ ନୁହେଁ ହାହାକାର ନୁହେଁ ସ୍ମୃତି ତାର
ନିଜକୁ ଯେ ବଳି କଲା ଦୂରିବାକୁ ପାପ, ଅନାଚାର ।
ପଚାର ନିଜକୁ ଭାଇ ଆଜି ଏହି ଅଗଷ୍ଟ ପନ୍ଦରେ
ସ୍ୱାଧୀନ-ଭାରତ ତମେ ଗଢ଼ୁଛ ତ ତାହାରି ବାଟରେ ?
ଯଦି ନୁହେଁ; ତେବେ ମିଥ୍ୟା, ବୃଥା ଏହି ଉତ୍ସବ ଚତ୍‌କାର
ଅଗଷ୍ଟ-ପନ୍ଦର ନୁହେ ପୁନର୍ଜନ୍ମ, ବିବାହ କନ୍ୟାର ।
ଏ ଯେ ଗାନ୍ଧି-ତପସ୍ୟାରୁ ଜନ୍ମ ନବ ଭାରତ-ଜାତିର
ତା’ ବନ୍ଦନା, ଗାନ୍ଧି-ସେବା, ନୁହେଁ ହେବା ଉତ୍ସବ-ଅଧୀର ।

ଶୁଣ ଶୁଣ ହିନ୍ଦୁସ୍ଥାନ, ଗୁଣି ଗୁଣୀ, ଜନସାଧାରଣ,
ଆଜି ଏ ପୁଣ୍ୟାହେ ତବେ ବାପୁଜୀ କି ହୁଅନ୍ତୁ ସ୍ମରଣ ?
ଭାରତର ଭାଗ୍ୟଦାତା, ପ୍ରଜାପତି ମୁକ୍ତ ଭାରତର
ହିଂସ୍ର, କ୍ଲାନ୍ତ ଧରଣୀରେ ଅବତାର ସତ୍ୟ ଓ ପ୍ରେମର;
ଯାହା ଯୋଗୁଁ ଯୁଗ ଯୁଗ ଧନ୍ୟ ହେବ ଅଗଷ୍ଟ ପନ୍ଦର
କି ଭାବରେ ତା ସ୍ମୃତିକି ସମ୍ମାନିତ କହ ଆଜି କର ?
ଜାଣେ କବି, ଆଜିର ଏ ମୁଖରିତ ଉତ୍ସବର ତଳେ
କୋଟି ଗଣ୍ଡ ତିନ୍ତୁଥିବ ତାଙ୍କ ପାଇଁ ଉଷ୍ଣ ଅଶ୍ରୁଜଳେ;
—ଅଶ୍ରୁତ ତାଙ୍କର ପାଇଁ, କିଏ ଆଜି ତାଙ୍କଠାରୁ ପ୍ରିୟ
ସ୍ୱାଧୀନତା ବଞ୍ଚିଥିବା ତାଙ୍କ ଲାଗି ରକ୍ତ ହୋଇ ଜଳ—
କିନ୍ତୁ ସେ ଯଥେଷ୍ଟ ନୁହେଁ; କର୍ମଯୋଗୀ, ଅଟଳ ବାପୁଜୀ
ତାଙ୍କର ବନ୍ଦନା ପାଇଁ ଲୋଡ଼ା ପରା ଅନ୍ୟ ପୂଜାପୂଜି ।
ସେ ପୂଜାରେ ଦ୍ରବ୍ୟ ନାହିଁ—ଦାରିଦ୍ର୍ୟହିଁ ସଙ୍ଗୀତ ତାହାର
'ଭୋଗ' ତହିଁ ଆତ୍ମ-ଶୁଦ୍ଧି, ବକାଣିବା ସବୁ ମିଥ୍ୟାଚାର ।
ସତ୍ୟ ତହିଁ ପୁରୋହିତ, ଅହିଂସା ତା ମନ୍ତ୍ର-ଉଚ୍ଚାରଣ
ତା' ଆସନ ବସ୍ତ୍ର-ଶୁଭ୍ରେ ବରନେବା ଆତ୍ମ-କରଷଣ ।
ଏ ପୂଜାର ଆୟୋଜନ କର ଭାଇ ଅଗଷ୍ଟ ପନ୍ଦରେ
ସ୍ଥିର କରି ପାଳିବାକୁ ଗାନ୍ଧି-ବାଣୀ ଅନ୍ତରେ ଅନ୍ତରେ ।
ଧରା ଯେବେ ଅନ୍ଧକାର, କୁଟୀରରେ ପ୍ରଦୀପ ମାଟିର
କରେ ଅନୁକୃତି ଯେହ୍ନେ କ୍ଷୀଣଭାବେ ଦିବସ-ଦୀପ୍ତିର
ତମେ ଭାଇ, ସେହିପରି ଦେଖିଲେହେଁ ପାପ ଚାରିଆଡ଼େ
କ୍ଷୁଦ୍ର ଗାନ୍ଧି ରହ କଳେ ଶକ୍ତିମତେ ଜଗି ଆପଣାରେ;
ସେହି ତବ ଶ୍ରେଷ୍ଠ ଅର୍ଘ୍ୟ ବାପୁଜୀର ଚରଣ କମଳେ
ପରମ ଉତ୍ସବ ସେହି ବର୍ଷେ ବର୍ଷେ ଅଗଷ୍ଟ ପନ୍ଦରେ ।

———

# ଜୀବଯଜ୍ଞ

— ◦ —

ପ୍ଲେଡ଼ା　କଟ୍‌ଲେଟ୍
ପ୍ଲେଡ଼ା　କୁର୍ମା
ଗୃଇ　　ମଟନ୍, ମିନ୍‌ସ୍-ଚୁର୍ଣ୍ଣ ।
ଗୃଇ　　ଇଲସିର ଝୋଳ
　　　ଚକନର ଚପ୍
ଗୃଇ　　ଚିଙ୍ଗୁଡ଼ି ହେମବର୍ଣ୍ଣ ।

ଆଜ　　ବନ୍ଧୁ ଆସିବେ
　　　ଟ୍ରେଳ ହାଣ
ଆଜ　　ପାଗ ଭଲ, ଗ୍ରାମ-
　　　ପକ୍ଷୀ ଆଣ

ଆନର ରକ୍ତ ଉଦରେ ନଗଲେ
ଉତ୍ସବ ଆମ ନୁହେଁ ଠାଣ ।

ତେଣୁ ପ୍ରତ୍ୟହ କୋଟି କୋଟି ଜୀବ-
ମଥା କଟେ ବୃଥା ଚକ୍ରାରେ
ଛାଗଳ, ଘାଉଷ, ଗାଈ, ଛେଳି, ମେଷ
କେ କରିବ ତାର ସଂଖ୍ୟା ତ?
ସବୁ ହୁଏ ନର ଜଠରରେ ଲୀନ
ବିଜ୍ଞାନ କହେ ନେଡ଼ା ସେ ପ୍ରୋଟୀନ
କୋଟି ଜୀବନର ଯନ୍ତ୍ରଣା ଲୁଚେ
ଭୋଜନ-ତୁଷ୍ଟ ଫୁତ୍କାରେ ।

—୨—

"କିବା ମୋଲାଏମ୍ ଏ ମାଂସ ସତେ !
କେଉଁଠୁ ଆଣିଲେ ଆପଣେ ?"
"ମାତ୍ର ତିନୋଟି ମାସର ଛାଗଳ ପୋଷିଥିଲି ନିଜ ଯତନେ,
ଆପଣଙ୍କ ଲାଗି ଖୁସିରେ କାଟିଲି !
କଟେ ଯାହା ଖାଇଲେ,
ତାକୁ ରାନ୍ଧିବାର ପ୍ରଣାଳୀ ଜାଣନ୍ତି ?
ଏବେ ସିନା ଜଣେ କହିଲେ !
ଟକ୍‌ଟକ୍ ଫୁଟା ପାଣିରେ
ଛାଡ଼ିବେ ଜୀଅନ୍ତା ପ୍ରାଣୀରେ
ତା ହେଲେ ରକ୍ତ, ଚୋପାଏ ନଷ୍ଟ
ନୋହିବ । ପାଇବେ ସ୍ୱାଦ ତା'
ଜୀଅନ୍ତା ନିକାଳି ଦେଇ ବା ପାରନ୍ତି
ଓଟାର ତାହାର ଖୋଳଟା !"

—୩—

ଜଳେ, ସ୍ଥଳେ, ନଭେ, ବଳେ, ବୁଦା, ବଣେ
କୋଟି କୋଟି ପ୍ରାଣୀ କରୁଣ ମରଣେ

ତୋଷ କରେ ନର କ୍ଷୁଧା,
ଯାହାଁ ରକ୍ଷିବାକୁ କେ ନପାଏ ଭଲ ?
କେ ଖୁଜେହିଁ ମରଣ ହୋଇ ବଳବଳ
ଗୁଳି, ଛୁରା ଖାଇ ହଠାତ୍ କେ ଖୁଜେହିଁ
ଛାଡ଼ିବାକୁ ଏ ବସୁଧା ?

ଏଇ ସେ ବଣ ଛାଗ
ଚକ୍ଷୁ ବାହାର ପଡ଼େ ବାରଧାରା ଯାହାର
ନିଜ ସନ୍ତାନ ବେଳେ ନଖାଇଲେ
ଖାଇବେ ବା କା'ର ପ୍ରହାର,
ସେହି ସେ ରମଣୀ ଯାଆଁ ତା ମହ୍ୟ
କାଟେ ଜଟକର୍ ନାହିଁ ତା ଲକ୍ଷ୍ୟ,
କର୍ତ୍ତିତ ମଥା କଷଣେ ଡେଉଁଛି
ଶୋଣିତ ବହୁଛି ବାହାର
ଲାଗି ପୁଣି କଣ୍ଠା-ଭ୍ରମରେ
"ଆଉର ଯାଉଛି ନମରେ ।"
କହି, ଛେଚି କରେ ମଥାରୁ ଜୀବନ ବାହାର !

—୪—

ଏଇ ଆମେ ନର !
କରୁ ଦାବି ବହୁ କରୁଣା ।
'ନରତ୍ୱ' ନାମେ କେତେ ଗାଏ ମନ ଫୁରୁଣା
'ପଶୁତ୍ୱେ' ନାକ ଟୁଁ ଥର,
ମୈତ୍ରୀରେ ଶୁଦ୍ଧ ଗଢ଼ିବୁ ବିଶ୍ୱ ସମାଜ
ଅଛି କି ସେଥିରେ ମୂକ ଜୀବଲାଗି ବିବାଦ ?

କରା ନ୍ୟାୟ-ହୀନ କର୍ମର !
ଏକ ନିୟମରେ ଗଢ଼ା ଆମେ ସବୁ
ସୂର୍ଯ୍ୟରୁ ପିପିଲିକା,
ଭୂମାର ବିଶ୍ୱ-ପରିବାରେ ଲୁଚ
ଭିନ୍ନତା ଅହମିକା;
ସେ ଯାଏଁ ଆମର ବାରୁଦ, ଛୁରିକା
ଘାତକ ମଯୂର, ମେଷେ
ନିରର୍ଥକ ସେ ଅଶ୍ରୁ ଆମର ପାତିତ ଦେଶୋଦ୍ଧେଶ୍ୟେ
ନିମ୍ନତମର ବ୍ୟଥା,
ବ୍ୟର୍ଥ କରିବ ଉଚ୍ଚତମର ଅହଙ୍କାରର ମଥା ।



# ସମାଧି

"ଏଇ, ଏଇ ସେ ଯେ କୋଠା,—ମସଜିଦ୍ ପଛେ,
ଅସ୍ପଷ୍ଟ ଯା ନାରିକେଳ ଗଛେ,
ସେ'ଠା ଜଜ୍ ଅମୁକଂକ ବିସ୍ତୀର୍ଣ୍ଣ ବାଗାନ୍,
ମାଛଠାରୁ ଶାଗଯାଏଁ ସବୁ ଖଞ୍ଜା ତହିଁ,
ତାଂକ ପରି କିଏ ଭାଗ୍ୟବାନ୍ ?"

"ପୁଣି ଏଇ,—ସ୍ଲାଟେଡ଼ ଅନା;
ସେ ମୋଡ଼ର ଦୁ'ତାଲା ସେ ଘର,
ଜାଫ୍ରାନ୍ ରଂଗର,
ଗାଆଁ ପାଖ ଅମୁକଂକ,—ବିଲାତ-ଫେରନ୍ତ,
ବେଜାଏ ବରମା ତାଂକ,—କଲେଜ୍‌ରେ କି କାମ କରନ୍ତି;
ଆଗପଛେ କହୁଘାଗା—ବିକିହୁଏ ଦୁଧ ଓ କଦଳୀ,
ବହୁ ଟଙ୍କା ପା'ନ୍ତି ପୁଣି
ଭଡ଼ା ଘର ଥୋଡ଼ା ଠିଆ କରି ।"

"ଏଇ ଯେ;—ପାରୁଛ ଦେଖି ?
ଖାଲି ସେହି ପଡ଼ନ ଯାଗାଟି ?
ଜମାହୁଏ ଇଟା, କାଠ, ମାଟି;
କିଣିଛନ୍ତି ଅମୁକ ସେ, ତୋଳାଇବେ ତିନତାଲା କୋଠା,
ଦଶ ବର୍ଷ ତଳେ ତାଂକ ନାହିଁ ଥିଲା ପଟି ଅବା ଲୋଟା,
ଆମ ସେଠି ପ୍ରଭେ ଯିବେ କହିଲେ କାହାରେ ?
ଏତେ ଟଂଙ୍କା ଆସେ ପୁଣି କତାପ ଛପାରେ ?"

କଟକ-ଟାଉନ୍-ବସ୍,
ଅତି ଭିଡ଼—ଅତି ଘେଞ୍ଚାଘେଞ୍ଚି
ଅଜାଣତେ, ଅନିଚ୍ଛାରେ ହେଉଛନ୍ତି ଯାତ୍ରୀ କେଞ୍ଚାକେଞ୍ଚି,
ହେଉଛନ୍ତି ଗାଳି ପରସ୍ପରେ,
ତେବେ ବି ଦଳକୁ ଦଳ. କଣ୍ଡକ୍ଟର ଯାତ୍ରୀ ଆଣି ଭରେ ।
ଅଧିକାଂଶ ଦୋଳିତ ଏକତ୍ର;
ସ୍ଥିର ରଖିବାକୁ ପାଦ, ମାରୁଛନ୍ତି ହାତ ଯତ୍ରତତ୍ର ।

ସେହି ଭିଡ଼େ, ସେ କନ୍ଦଳେ, ସହସ୍ର ସେ ମାନବ ମିଳନେ
ନିଶ୍ଚିନ୍ତରେ ବସି ଏକ କୋଣେ,
ମଫସଲୁଁ ଦୁଇସାଙ୍ଗ ଦେଖୁଛନ୍ତି କଟକ-ନଗର;
ସହରର ଆଡ଼ମ୍ବରେ, କୁତ୍ସିତ ତା' ଧୂଳି, ଆବର୍ଜନା
ନାହିଁ ପଡ଼େ ନଜରେ ତାଙ୍କର ।

ଯିଏ ଆଗୁଁ ପରିଚିତ କଟକ ସାଥିରେ
ଦେଖାଏ ସେ ନବ ଅତିଥିରେ;

କଟକ ସହରରେ ତାଙ୍କୁ ଅମାଲୁମ ନାହିଁ କେଉଁ ସ୍ଥାନ,
ମହତଙ୍କୁ ଜାଣିବାହିଁ ହେଲା ତାର ଅହମିକା-ମାନ ।

ସେହି ସେ ପେଞ୍ଚରେ ଚପି ଆପଣାକୁ କଇଁଣସିମତେ
ବସିଥାଏଁ ମୁହିଁ ଏକପଟେ;
ଶୁଣୁଥାଏଁ ଏ ଦୁହିଙ୍କ ବାକ୍ୟାଳାପ ମୁଗଧ କୌତୂହଳେ,
ବର୍ଣ୍ଣିତ ହେବାର ଯେତେ ଗଣ୍ୟମାନ୍ୟ କଟକ-ନଗରେ,
ଧନ, ଧାନ୍ୟ, ଟଙ୍କା, କୋଠାଘର,
ପ୍ରାଚୀନ 'ସାହେବ' 'ବାବୁ', ନୂଆ 'ମାନ୍ୟବର' ।

ବସ୍‌ରୁ ଓହ୍ଲାଇ ଶେଷେ ହେଲେ ଅନ୍ତର୍ହିତ
ଯେଉଁ ପଥେ ଯାତ୍ରି-ଦଳ । ମୂଢ, ହତଚକିତ
ମୁହିଁ ଧୀରେ ଧୀରେ ଶେଷେ ବସ୍‌ରୁ ଓହ୍ଲାଇ
ମଫସଲି ବନ୍ଧୁଙ୍କର ମାପ-କାଠି ମନେ ମନେ ଧ୍ୟାଇ ।
ଚିତ୍ତ ହୁଏ ତିକ୍ତ, ହମନ୍ତି ତ,
କେଉଁ ମାନଦଣ୍ଡେ ସତେ ମୂଲ୍ୟ ମୋର ହେବ ପରମିତ ?

ଶେଷେ ଶାନ୍ତ ସମାହିତ କରି କ୍ଷୁବ୍ଧ ଚିତ୍ତେ
ଉଠାଇଲି ଏ ପ୍ରାର୍ଥନା ସ୍ରଷ୍ଟା-ପାଦ-ପୀଠେ,
"ହେ ନାଥ, ଭରିଛ ପ୍ରାଣ ନାନା ଲାଞ୍ଛନାରେ,
ଶୂନ୍ୟ ତାହା ଆଜଯାଏ ଖାଲି ବଞ୍ଚନାରେ,
କେବେ ଯେହ୍ନେ ନାହିଁ ହୁଏ ଅଯାଚିତ ନବ ଅପମାନ,
ମାପିତ ହେବାର ମୋର କ୍ଷୁଦ୍ର ଯାହା ନଗଣ୍ୟ ସମ୍ମାନ,
ମାନଦଣ୍ଡେ, ଅର୍ଥ ହାକିମିର,
ବଣେ, ମରେ, ମାଙ୍କ କବ—ଚକ୍ଷେ ଯାର ପର ପାଇଁ ନୀର ।

ଗ୍ଲେଠ ଏକ ସମାଧିଟି ଶ୍ୟାମ ଘାସ ପରେ
ଥାଇପାରେ ପଲ୍ଲି ବା ନଗରେ,
ଏକମାତ୍ର ଚିହ୍ନରୂପେ ଧୀନ ଏହି ପୃଥ୍ୱୀ-ବାସୀର,
ମୃତ୍ୟୁ-ରାଜ୍ୟେ ଯିବ ଯେବେ, ଛାଡ଼ି କୋଳ ମାଆ ଧରଣୀର ।

ବସନ୍ତର ପୁଷ୍ପୋତ୍ସବେ, ଶାରଦ ଜ୍ୟୋତ୍ସ୍ନାରେ
ସ୍ମରି କେବେ ମୋ ଦେଶର ଯୁବକ ଯୁବତୀ,
ଆସି ସେ ସମାଧି ପରେ
ପୁଷ୍ପ ଢାଳି ପ୍ରୀତିଭରେ
କବରେ ଦେବେ ସେ ଯଦି ଶ୍ରଦ୍ଧାର ଆରତି,
ସେହି ସେ ହୋଇବ ମୋର ଶ୍ରେଷ୍ଠ ପୁରସ୍କାର,
ସେହି ମୋର ମାନଦଣ୍ଡ ଜୀବନ-ଯାତ୍ରାର ।



## ତାହାରେ ସ୍ମର ଭାଇ

କ୍ଷୁଦ୍ର ଲାଭେ ଚିତ୍ତ ଯେବେ ହୁଏ ଅଭିଭୂତ
କ୍ଷମତା ଆଶେ ଧର୍ମପଥୁଁ ଚରଣ ହୁଏ ଚ୍ୟୁତ,
ଶ୍ରେଷ୍ଠ ଯେବେ ଦଳିତ ହୁଏ ସାମାନ୍ୟର ପାଇଁ
ତାହାରେ ସ୍ମର ତାହାରେ ସ୍ମର ତାହାରେ ସ୍ମର ଭାଇ !

କେତନ ତାର ଉଡ଼ାଅ ଯେହୁ ସୈନିକ ସାମନ୍ତେ
ମଥାରେ ତାର ମାଲ୍ୟ ଦେଇ, ଦଳ ନା ତାର ମତେ
କର ନା ପାପ- କର୍ମ ଯେତେ ପୂଣ୍ୟ ତା ନାଁ ଗାଇ,
ସ୍ମରଣ କର ବଚନ ତାର ପାଳନ କର ଭାଇ !

ପଶୁ କେ ସିନା ନାଶିଲା ତାର ପଙ୍କ-ମାଟି-ଘଟ,
ଭକ୍ତଠାରୁ ପାଉଛି ସେ ଯେ ଗୋଇଠା ଅବିରତ,
ଛଦ୍ମବେଶେ ଅଧିକ ତାରେ ହତ୍ୟା କର ନାହିଁ
ସାମାନ୍ୟରେ ଆଦେଶ ତାର ପାଳନ କର ଭାଇ !

ଅସ୍ତ୍ର ସେ କି ଶତ୍ରୁ ଆଜି ଅଗଷ୍ଟ ପନ୍ଦରେ
ପରେଡ୍ ଆଉ ବକ୍ତୃତାରେ, ମେଳା ଉତ୍ସବରେ ?
ତାକୁଇ ଟିକେ ପ୍ରବେଶ ଦିଅ ମନର ମନ୍ଦିରେ,
ଏ ମହାଦିନର ସ୍ରଷ୍ଟା ସେହି, ପ୍ରାଣର ବାପୁଜୀରେ ।

---

# ଫେରାଇ ଦିଅ

ଫେରାଇ ଦିଅ, ଫେରାଇ ଦିଅ
ସ୍ୱପ୍ନ ସରସ କିଶୋର ବୟସ
ମଧୁର ସେ ଦିନ
ପୀରତି-ପ୍ରିୟ !

ଜୀବନ-ପ୍ରଭାତେ ମାଗୁଥିଲି ଯାହା
ନୟନ-ଜଳେ,
ପ୍ରାଣର ସେ ମଗା ଏବେ ବି ଜାଗର
ମର୍ମ ତଳେ ।

ଶୁଣି, ଶୁଣି ନାହିଁ ବିକଳ ଯାଚନା,
ପଥ-ମଗା ଲୋକେ କଲି ବାଟ-ବଣା
ବ୍ୟର୍ଥ, ବିପଥ, ବିକଳ, ମିଥ୍ୟା
କନ୍ଦାଇଲ ମୋର ପ୍ରାଣର ଦିଅଁ
ଜୀବନ-ଦେବତା,
ଅଲୋଡ଼ା ଏସବୁ,
ନିଅ ହେ ନିଅ ।

ନବ କଦମ୍ବ ଗନ୍ଧପାଗଳ ଭ୍ରମର ପରି
ନୂଆ ଜୀବନର ମାଦକେ ନଚିଲ ଚିତ୍ତ ଭରି,
ଉନ୍ମନେ ବୁଲୁଥିଲି ଏ ଧରଣୀ
ଅନୁଭବମୟ ତରୁଣ ଧମନୀ
ମାଟିର ଏ ଧରା ଦିଶୁଥିଲା ସତେ
କି କମନୀୟ
ସେଇ କାଳ ସତେ ଫେରାଇ ଦିଅ ।
ବାଟେ ନବ ଫୁଟା ରୂପକୁସୁମର ମାଳାଟି ଧରି
ଏକ ସେ କିଶୋରୀ ଦେଖୁଁ ପାଦ ଆଉ ନ ପାରେ ଚଳି,
ଯଉବନର ଆଖେ ସରମର ଘୋର
ଦୁଇ ଓଠେ ମୃଦୁ ସ୍ମିତର ଜୁଆର,
ବିନା ବଚନରେ ଅପ୍ରକଟିତରେ
କେ କଲା ପ୍ରଣୟେ
ବନ୍ଧ-ହୃଦୟ !
ହେ ଜୀବନ-ନାଥ,
ପ୍ରଣୟର ସେହି
ମଧୁ ଆଗ୍ରହ
ଫେରାଇ ଦିଅ ।
ସେ ଦିନୁଁ ଯାଇଛି କେତେକାଳ ଏବେ ବୁହାଇ ଲୁହ
ଜୀବନର ଦାନେ, ଲାଜେ ବିଦ୍ରୋହେ ନଇଁଛି ମୁହିଁ !
ମାଟି କୁଟା ପାଇଁ କି ଯେ ଚକରାଳ,
ଭୁକ୍ଷ ପାଇଁରେ କିବା ଜଞ୍ଜାଳ,
କଅଁଳ କାଳର ମରମ-ପିପାସା
ଫସାରେ ଯେଣୁ ଅଚଳମୟ

ହେ ନାଥ, ସେ ଦିନ ବସନ୍ତ ଦିନ
ଆଜି ନି-ସବୁଜ
ରୁକ୍ଷ ହୋଇ ।
ପ୍ରାଣର ଦେବତା ନିଃଶେଷେ ସବୁ ନିଅ ହେ ନିଅ,
ଲୋକ-ଲୋଚନକୁ ଯା କିଛି ଶ୍ରେଷ୍ଠ, ଶଂସନୀୟ,
ଦିଅ ପୁଣି ଖାଲି ସେଇ କୈଶୋର
ନବ ଜୀବନର ସ୍ୱପ୍ନ ବିଭୋର
ରସ ଉଚ୍ଛଳ,
ଲୁହ-ପିଚ୍ଛିଳ
ଅପାପବିଦ୍ଧ,
ସ୍ୱଚ୍ଛ ହୃଦୟ,
ହେ ନାଥ, ହେ ସଖା,
ସେତିକି ଜାଳ ଥରେ
ଫେରାଇ ଦିଅ ।



## ସେଇ ଦୁଇ ଆଖି

— ୧ —

ସଞ୍ଜେ, ସକାଳେ, ସଂଘେ ବିହାରେ
                ନିମଗ୍ନ ଯେବେ ଧ୍ୟାନେ,
ତଥାଗତ-ବାଣୀ ଅମୃତୋପମ ବାଜୁଥାଏ କାନେ କାନେ,
ମନ ଯେବେ ମୋର ସକଳ ତୃଷ୍ଣା-ବନ୍ଧନ କାଟି କାଟି
ନିର୍ବାଣେ ଉଠେ ମୁଦିତା, କରୁଣା ଜଗତରେ ବାଁଟି ବାଁଟି,
ସହସା ସେଇ ସେ ନୟନ ଦୁଇଟି,
                ଭାସି ଉଠେ ଅନ୍ତରେ
ତାହାରେ କହିବା ସରମେ ସେ କଥା
                ମରିବେ ମରମେ ମରେ ।

— ୨ —

କାହାରେ କହିବି ସିନା ହେ ବୁଦ୍ଧ !
                ତୁମଠୁ ଲୁଚିବ କଷ,
ତବ ପଦେ ସବୁ ସଁପିଛି ପ୍ରାଣର ସଂଗ୍ରାମ ଅହର୍ନିଶ ।
ତୁମେଇ ମୋହର ଆଶ୍ରୟ, ଗୁରୁ ସାଧନାର ଋଜୁ-ପନ୍ଥା
ତୁମକୁ ତରୁଣ ଭିକ୍ଷୁ ଜଣାଏ ତା ଚିତ୍ତ ହଟହଟା ।

ବୁଦ୍ଧ ଶରଣ ଯାଏ
ଧର୍ମ ଶରଣ ଯାଏ
ତରୁଣ ଭିକ୍ଷୁ ମାୟା-ବନ୍ଧନୁ
ମୁକ୍ତ କେବଳ ତୁମ୍ଭେହିଁ ।

— ୩ —

ବାର ବାର ଚିତ୍ତ ମନ୍ଥିତ କରି ସେହି ସେ ନୟନ ଟାଣେ,
ଗମନେ, ଶୟନେ, ଧ୍ୟାନେ,
ପୂର୍ଣ୍ଣିମା ଶଶୀ ତରଳ ଜଳଧି ଜଠରେ ଟାଣିଲା ପରି
ହେ ବୁଦ୍ଧ, ତେଣୁ ଶରଣ ମାଗୁଛି
ଆତୁର ଗଭୀର ସ୍ୱର ।

— ୪ —

ତୁମର ଚରଣେ ଶରଣ ପଶିଛି ପ୍ରପଞ୍ଚ ଜଞ୍ଜାଳୁ
ବିଦାୟ ନେଇଛି ଘର, ପରିବାର, ସମାଜ, ବନ୍ଧୁଠାରୁ ।
ସୂକ୍ଷ୍ମ ତନ୍ତୁ ଟାଣି ମାୟା ମୋତେ ତଥାପି ବାନ୍ଧଇ ଜୋର
ହେ କରୁଣାମୟ, ଆଶ୍ରୟ ଦିଅ କରି ହେ ନିକଟତର ।

— ୫ —

ତୁମରି ଆଦେଶେ ଭିକ୍ଷାର ଆଶେ
ଯାଏ ଯେବେ ପଥ ପ୍ରାନ୍ତେ,
ନୀରବ-ବଦନ, ନମ୍ର-ନୟନ, ଭିକ୍ଷାପାତ୍ର ହାତେ
ପରମ ଯତନେ, ଅନ୍ତରେ ମନେ ତୃଷ୍ଣାର ଅବସାନ
ଅଭ୍ୟାସ କରେ, ଆର୍ଯ୍ୟ ଅଷ୍ଟ ମାର୍ଗରେ ରଖି ଧ୍ୟାନ,
ତଥାପି ପ୍ରଭୁ ହେ, ମାର ଟାଣେ ଥର ଥର
ହେ କରୁଣାମୟ, ଦୟା କର ଉଦ୍ଧର ।

—୬—

ପ୍ରଶ୍ରଜ୍ଞା ମୋର ଭାସିଯାଏ କାହିଁ, ଚରଣ ଧରଇ ପଥ
ଅଜ୍ଞାତେ ସେ ଦୂର ଗାଏଁ ଘର
-ଲେଉଟା ପଥିକବତ ।
ନମ୍ର-ନୟନ ଆପେ ଉଠିଯାଏ ସେଇ ବାତାୟନ ଆଡେ
ଶ୍ରେଷ୍ଠି କନ୍ୟା ଗୃହିଁଥିଲା ଯହିଁ
ବଦନେ ମଞ୍ଜୁଳ ହାସେ ।

—୭—

ପ୍ରଭୁ ବୁଦ୍ଧ ହେ, ସେହି ହସ, ସେହି କଟାକ୍ଷ ନୟନର
ଦାରିଦ୍ର୍ୟ ଚୀର ତଳେ କରେ ମୋର ଚିତ୍ତରେ କଳବଲ ।
କପର ଏ ମାର-ସଂଗ୍ରାମ୍ମ ମୁହିଁ ତରୁଣ ବ୍ରହ୍ମଚାରୀ
ଅଷତ ଜଦ୍ୟେ ଉପସର୍ପିବି—ତବ ପଦେ ମୋ ଗୁହାରି ।
ଆତ୍ମର ଶରଣ ଯାଏ
ଆକର୍ଷଣ ଏ ଦାନବ କପର
ଶକ୍ତି ଦିଅ ହେ ପାଦପ୍ତ ।

—୮—

ନବାଣ ଆଜେ ତରୁଣ ଭିକ୍ଷୁ ଶକ୍ତ, ଭକ୍ତ, ତ୍ୟାଗୀ
କୁଟୁମ୍ବ ଜନ ଘର ସଂପଦ ଛାଡ଼ି ସେ ଆସିଛୁ ମାଗି
ତୁମର କରୁଣା, ତଥାଗତ, ପାରହେବାକୁ ଏ ସଂସାର
ଦୁଇଟି କୃଷ୍ଣ ନୟନ ଅଇର ଆଜ ତା ତପସ୍ୟାର ।
ତୁମେଇ ଶରଣ ତାର
ହେ ଜୀନ, ବୁଦ୍ଧ ପରମ ଶୁଦ୍ଧ,
କରୁଣାର ଅକୂପାର ।

———

# ତୀର୍ଥଯାତ୍ରା

ଦୂର ଗ୍ରାମେ ମଫସଲେ ନିରକ୍ଷର ନାରୀ
'ମଣି' ତାର ନାମ, ବଡ଼ ସରଳା ହରୁଷୀ,
ସ୍ୱାମୀ ଛଡ଼ା ଆଉ କିଛି ଜାଣେ ନା ସଂସାର
ସ୍ୱାମୀର ସେବାରେ ଖାଲି ଦିନ ଯାଏ ତାର ।
ସ୍ୱାମୀ ପାଇଁ ନାନା ବ୍ରତ ନାନା ଉପବାସ
ନାନା ଦେବପୂଜା, ନାନା ଠାକୁର ମନାସ,
ମନ ଦେଇ ଧନ ଦେଇ ଡାକଇ ସକଳେ
'ହେ ଦିଅଁ, କେବଳ ତାଙ୍କୁ ରଖ ହେ କୁଶଳେ ।'
ସର୍ବ କୁଶଳରେ ମିଶେ ଯୁଗଳ ପ୍ରାଣୀରେ
ରଖିଥିଲେ ଦିଅଁ । ଖାଲି ଦରିଦ୍ର କୁଟୀରେ
ଶୁଭ୍ଲନ ଏଯାବତ ଦଶେଟି ଭୂଷଣ
ବାଲଗୋପାଳର ମୁଖଁ, ଅମୃତ ସିଂଚନ
କରି ଦୁଇ ପ୍ରାଣି-କକ୍ଷେ । ଏକ ଆନ ମୁଖ
କେତେ ଆଉ ଦେଖି ଦେଖି ପୁଲକିବ ବୁକ ?
ନୂତନ ବନ୍ଧନ ଲୋଡ଼ା ବାନ୍ଧିବାକୁ ଦୁହେଁ
ସ୍ୱାମୀ ଆଉ ଅନାଉନ ବେଶି ତାର ମୁହେଁ—
ଏ କଥା ମଣିର ବକ୍ଷେ ମାରିଯାଏ ଛୁରୀ
ଅବରୁଦ୍ଧ ସନ୍ତାପେ ସେ ହୁଅଇ ସନ୍ତୁଳ ।

ସ୍ୱାମୀ କଥା ଶୁଣି, ନିଜେ ମଣିର ହୃଦୟେ
ଜନନୀର ଆବିର୍ଭାବ ହୁଏ ଯେ ସମୟେ,
ସକଳ ଶରୀର ତାର, ସ୍ନାୟୁ ଶିରା ଧରି
ସୁନିବିଡ଼ ବେଦନାରେ ଉଠେ ଥରି ଥରି,
ଅବ୍ୟକ୍ତ ଚିତ୍କାରେ କିଏ ଡାକଇ ରକତେ
'ବୋଉ, ବୋଉ' ଡାକି ଟିକେ 'ଦୁଧଦେଏ ମତେ'।

ସତ୍ୟ ନ ପାଷାଣ ମଣି, ହାତ କାମ ଛାଡ଼ି
ଶୋଇ ପଡ଼େ ଭୂମି-ଶେଯେ, ନେତ୍ର ଦୁଃଖ ଢାଳି ।
ନାରୀ ହୋଇ ମାଆ ସେ ଯେ ନ ହେବ କପରି ?
ଗର୍ଭ ତାର ଶୂନ୍ୟ ଥିବ ! ସ୍ତନ୍ୟ ଥିବ ସରି
ଶିଶୁର କୋମଳ-ନୋଳ-ଓଷ୍ଠ-ପାନ ବିନେ,
ପୁରୁଷ ଜନମ କିପାଁ ନ ହେଲା ଜୀବନେ ?

ମଣି-ସ୍ୱାମୀ ରଘୁନାଥ ଚଷା ତ ସହଜେ
ମଣିର ଏ ସୂକ୍ଷ୍ମ-ଦୁଃଖ ମନେ ନାହିଁ ଭଜେ ।

ସେ କେବଳ ଥରେ ଥରେ ଭାବେ 'ଯଦି ଆନେ
ପିଲାପିଲି କଲେ, ମୋର ନ ହେବ କେସନେ ?
ତାହା ଛଡ଼ା ବେଳେ ବେଳେ ଭାବେମଧ୍ୟ ବସି
ଶ୍ରାଦ୍ଧ ଫ୍ରାଦ୍ଧ କଲାବେଳେ କେବେ ପ୍ରତିବେଶୀ,
ମଲା ପରେ ତାକୁ ମଧ୍ୟ ପିଣ୍ଡ କିଏ ଦେବ
ଲୋକମତେ ଆଣ୍ଠୁକୁରା ନରକେ ପଡ଼ିବ ।
ଏ ସକଳ ବୁଝି ଭାବି ରଘୁ ଥରେ ଥରେ
କୃଷକ ସ୍ୱଭାବରେ ରାଗ ଢାଳେ ମଣିପରେ ।
ସରଳା ସେ ସତୀ ଜାଣି ନିଜ ଅପରାଧ
ନିର୍ବିବାଦେ ସହିଯାଏ ସବୁ ପରିବାଦ ।

ବରଷ ବରଷ କରି ଦଶଟି ତ ଗଲା
କ୍ରମେ କ୍ରମେ ନିରାଶାରେ ବୁଡ଼ିଲି ସରଳା ।
କ୍ରମେ କ୍ରମେ ଭୁଟିଯିବ ଦେହରୁ ଯୌବନ
ବୟସଗଲେ କି ହେବ ସନ୍ତାନ ଜନନ ?
ନାନାମତେ ଉପଚାର ବ୍ରତ ଉପବାସ
କଲି ମଧ୍ୟ ପୂରିଲାନି ମଣି-ଅଭିଳାଷ ।
ଶେଷରେ ଅମୋଘ ପଥ କହିଲେ ସକଳେ,
"ତୀର୍ଥଯାତ୍ରା କର ମଣି, ଦେବତାଙ୍କ ବରେ
ହୋଇପାରେ ଯଦି କିଛି—ନ ହେବ କାହିଁକି ?
ଆଖି ଆଗେ ଦେଖିଲୁ ତ 'ପୁରିରେ' ପାଇଛି
ପୁଅ-ମା ପୁରସ୍ତମେ ଦେଖି ଜଗନ୍ନାଥେ
କି ନ ଘଟେ, ଦୟା କଲେ ବିଧାତାଙ୍କର ହାତେ ?
କାର୍ତ୍ତିକ ପୂର୍ଣ୍ଣିମା ଦିନ ଯାଉଛନ୍ତି ପରା
କେତେ କେତେ, ଯାଆନ୍ତୁ ତୁ—ଯଦି ଟଳା-ଡୋଳା
ଦୟା-ନେତ୍ର ପକାଇବେ, ଦୁଃଖ ଯିବ ଚାଲି,
କାନ୍ଦ ନା ଲୋ—କାହିଁ କାନ୍ଦୁ—କାନ୍ଦି କାନ୍ଦି ଖାଲି
ଶୁଖିଗଲୁଣି ତୁ ଅଧେ—କାନ୍ଦ ନା ଲୋ ଆଉ
ଇଏ ଗୋଟେ ଦୁଃଖ କଣ 'ସିଏ' ତୋର ଥାଉ ?"

ସେ ଦିନ ଶୁଣିଥେ ମଣି, ସ୍ୱାମିପଦ ଦୁଇ
ସାଉଁଳି ସାଉଁଳି ସ୍ନେହେ, ଦେହ ମୁଣ୍ଡ ଛୁଇଁ
ଦୁଇ ଗଣ୍ଡୁ ଅଶ୍ରୁ ତେଜି, ଚନ୍ଦ୍ରୁଳି ସ୍ୱାମୀରେ
କହିଲି ଗୋପନେ ନିଦ୍ରା ଭଙ୍ଗାଇ ସଧୀରେ
ଶ୍ରୀକ୍ଷେତ୍ର ଯିବାର କଥା । ସ୍ଥୂଳବୁଦ୍ଧି ସ୍ୱାମୀ
କି ବୁଝେ ତା ନାରୀ-ଦୁଃଖ ? ନାହିଁ ପଚାରମି .

ମଣି-ବକ୍ଷେ ମା ହେବାର ସୁତୀବ୍ର ବେଦନା
ବନ୍ଧ୍ୟା ଦୋଷୁ ମୁକ୍ତ ହେବା ଅବ୍ୟକ୍ତ ବାସନା,
ଯେମନ୍ତେ ସେ ନାରୀଟିର ସମଗ୍ର-ଜୀବନ
ଇହ-ପର, ସମସ୍ତହିଁ, କୋମଳ ବଦନ
ଶିଶୁଟିରେ କେନ୍ଦ୍ର କରି ଘୂରେ ଅବିରତ,
କିନ୍ତୁ ସେ ବୁଝିଲା ନାହିଁ — ରହି ତନ୍ଦ୍ରାରତ;
କହିଲା ଉପେକ୍ଷାଭରେ 'ଯିବୁ ଯଦି ଯାଆ
ବାଞ୍ଝାଟା ତୁ — ତୋ କପାଳେ ଅଛି ହେବୁ ମାଆ !'

ଏତେ କହି ସୁଗଭୀର ନିଦ୍ରା ଗଲା ପୁଣି
ମଣି ଯେସନ୍ତି ସ୍ୱାମୀପାଶେ ଦୁଃଖ ଗୁଣିଗୁଣି
ପୁହାଇଲା ସେ ରଜନୀ ଗଭୀର କ୍ରନ୍ଦନେ ।
ତା ପରେ ଚଳିଲେ ହେବେ ତୀର୍ଥ ଦରଶନେ ।

ଗ୍ରାମବୃଦ୍ଧା କେତେ ଜଣ ପୁଟଗଣ୍ଠିତେ ଧରି
ମଣି ତାଙ୍କ ସଙ୍ଗେ ଗଲା । ବନ୍ଦୋବସ୍ତ କରି
ସବୁ କଥା ସ୍ୱାମୀ ପାଇଁ, କହି ବାର ବାର
ପ୍ରତିବେଶିନୀ ଜାଆରେ, ଖାଇବା ପିଆର

ସବୁ ଯତ୍ନ ନେବାକୁ । ନିଜେ ରଘୁନାଥେ
ଜାଣିଗଲା ଫେରିବ ସେ ସମସ୍ତଙ୍କ ସାଥେ
ଅଳ୍ପ ଦିନେ, ସଙ୍ଗିନୀ ବ୍ୟସ୍ତ ହେବେ ନାହିଁ—
କିନ୍ତୁ କିନ୍ତୁ ଆଖି ତାର ଓଦା କାହିଁପାଇଁ ।

ବିରାଟ ଦେଉଳ, ବହୁ ଜନ ସମାଗମ,
ଅବିରତ କୋଳାହଳ, ସଦା ଗମଗମ
ଶତ ଶତ ଯାନେ, ଦୀର୍ଘ ପ୍ରଶସ୍ତ ନଗର,
ଶତ ଶତ ଅଟ୍ଟାଳିକା, ହସୁ ବିଦ୍ୟୁତର

ବିବାହିତ ଅଭିନୟ, ଦେଖି ଦେଖି ମଣି
ଶ୍ରୀକ୍ଷେତ୍ରର ସବୁ କଥା ସ୍ୱପ୍ନ ପରି ମଣି ।

ପ୍ରତିବେଶୀଙ୍କ ସଙ୍ଗମେଳେ ବଡ଼ଦେଉଳରେ
ଶଙ୍ଖ ଘଣ୍ଟା ବାଦ୍ୟରୋଳ-ଗମ୍ଭୀର-ମୁଖରେ,
ଭକ୍ତ ଜନ ସମାଗମ, ପ୍ରାଣର ଉଚ୍ଛ୍ୱାସ
କୃତକୃତ୍ୟ ପ୍ରଣିପାତ୍ୟ, ଗନ୍ଧ ମାଲ୍ୟ ବାସ,
ଚନ୍ଦନ ଅର୍ଗଳ, ବେଢମାଣ୍ଡ, ଘୃତଦୀପ,
ଗମ୍ଭୀରାରେ ରତ୍ନ ସିଂହାସନର ସମୀପ,
ଶ୍ରୀମୂର୍ତ୍ତିର ସନ୍ନିଧାନେ ସାତ୍ତ୍ୱିକାନୁଭୂତି
ଗଦଗଦେ ଜଣାଇବା ପ୍ରଭୁର ବିଭୂତି—
—ସବୁ ମିଳିମିଶି ପ୍ରାଣେ ଅଦ୍‌ଭୁତ ଭାବର
ଉଦୟ ହୋଇଲା ଧୀରେ । ଝର ଝର ଝର
ନେତ୍ରୁ ତାର ଲୁହ ଗଲା ଖରତର ବହି,
'ପ୍ରଣିପାତ ଦେବତାରେ ଦୁଃଖ ଗଲା କହି—
ହେ ପ୍ରଭୁ, ଜଗତକର୍ତ୍ତା, ଜଗତର ନାଥ,
ଏ ଲୀଳା ଲଗାଇଅଛ, କର ଆତଯାତ
ସକଳ ସଂସାର ତୁମେ, ଏ ଦୁଖିନୀଟାର
ସାମାନ୍ୟ ଏ ଦୁଃଖ କି ହେ ନାହିଁ ଟାଳିପାର ?'

ତଳ-ପ୍ରଣମିତା ମଣି ସ୍କନ୍ଧଦେଶେ ତାର
ଅନୁଭବ କଲା କର-ସଂସ୍ପର୍ଶ କାହାର,
ଚମକି ହୋଇଲା ଉଭା, ଦେଖିଲା ପଶ୍ଚାତେ
ସେମାନଙ୍କ ପଣ୍ଡା ଧରି ପୁଷ୍ପ ମାଲ୍ୟ ହାତେ
କହୁଛି, 'ନିଅ ମା ଏହି ପ୍ରସାଦ ପ୍ରଭୁର'—
ବୋଲି ପଛୁ ହାତ ଆଣି ଛୁଇଁ ତାର ଉର

ମଣି-ହାତେ ଦେଇ କହୁ—ସାଶ୍ରୁଲୋଚନରେ
ଘୁଞ୍ଚିଯାଇ ମଣି, ତାକୁ ବାନ୍ଧିଲ ଆଦରେ ।
ପଚାରିଲ ପୁଣି ପଣ୍ଡା, 'କପାଁ ଏତେ ଖେଦ,
କି ହୋଇଛୁ, କି ଅଭାବ, କରଦେବା ବୋଧ
ଠାକୁରେ ତୁମର ଲାଗି, କରିବା ଉପାୟ,
କାନ୍ଦୁଛ କପାଇଁ ଏତେ ପାଗଳମା ପ୍ରାୟ ?'

ମଣି ରହେ ନିରୁତ୍ତର କହନ୍ତି ସାଥୀଜନେ
ପ୍ରକାଶିଲେ ମଣିଦୁଃଖ—ସନ୍ତାନ ବିହୁନେ
କେମନ୍ତେ ସେ ସାଧିଲାଣି କଠୋର ତପସ୍ୟ,
ଅପେକ୍ଷା କଲାଣି ଦୀର୍ଘ ଦଶଟି ବରଷ
ବୃଥା ଖାଲି । କଉଣସି ଦିଅଁ ବା ଦେବତା
ଶୁଣିଲେନି ଦୁଃଖ ତାର । ଶେଷେ ହେଲା କଥା
ଠାକୁରଙ୍କ ରଜା ତ ଏ—ଯାଙ୍କୁ ଜଣାଇବା
କି ହେଉଛି ଭାଗ୍ୟେ ତାର ପଛକେ ଦେଖିବା ।
ଦୁଃଖିମାଟା ବହୁ କଷ୍ଟ—ହସି କହେ ପଣ୍ଡା
'ଏଇ କଥା ? ମୋ ଦେଖାରେ ବନ୍ଧ୍ୟା ଗଣ୍ଡା ଗଣ୍ଡା
କାଳିଆ-ଦୟାରେ ଏବେ ବହୁପୁତ୍ରବତୀ
ଏ କି ଗୋଟେ କଥା ?' ତେବେ—ଘୁଞ୍ଚିଆସି କତି
ପ୍ରବୀଣ ଜଣକ କାନେ କହେ ପଣ୍ଡା ଧୀରେ
କିଛିକଥା, ଫୁଁସି ଫୁଁସି କହେଇ ମଣିରେ ।
ପ୍ରବୀଣ ଠୁଙ୍କାରେ ମୁଣ୍ଡ—କ୍ରମେ ସେ ବାରତା
ଗୋପନେ ଗୋପନେ ହେଲା ସଭିଙ୍କ ଜାଣତା
କେବଳ ମଣିରେ ଗୁଡ଼ି । ବହିଲା କେ ଦଳୁ
'ତାର କି ଆପତ୍ତି ଏଥି ? ଘରେ ଆସେ ଚାଲୁ ।'

ବସାରେ ଶୁଣିଲା ମଣି ପ୍ରସ୍ତାବ ଗୋପନ
ଝିମି ଝିମି ହେଲା ଦେହ ଶୁଖି ତାର ମନ
ଘୃଣାରେ ଉଠିଲା ପୂରି । କହିଲା ହଠାତ୍
'ଏକି କଥା ? ଛି ଛି ଛି ଛି !' ଛିଁ ଗୁଡ଼ି ସେ ହାତ
ଘୁଞ୍ଚି ଗଲା ଅନ୍ୟ ସ୍ଥାନେ । ତହୁଁ ବୃଦ୍ଧା ଦୁଇ
ପଛେ ଯାଇ, ପାଶେ ଧରି କହିଲେ ବୁଝାଇ,
'ଦେଖ୍ ମଣି, ତୋରି ଭଲ ପାଇଁ ସିନା କଥା,
ତୋ ଲାଗି ଆମରି କପାଁ ବଥାଇବ ମଥା ?
ଏତେ କଷ୍ଟ ପାଇ ଶେଷେ ଆସିଛୁ ଏଠାରେ,
ଏଠି ଯଦି ବ୍ୟର୍ଥ ହୁଏ କହିବୁ କାହାରେ ?
ତୀର୍ଥ ସ୍ଥାନେ ବ୍ରାହ୍ମଣଙ୍କୁ ଦେଲେ ଉପଭୋଗ
ପାପ କିସ ? ଏ ତ ତୋରି ବରଂ ପୁଣ୍ୟ ଯୋଗ ।
ପିଲା ତୁ ଜାଣିନୁ କିଛି, ବାଞ୍ଝ ହେବାଠାରୁ
ଛତ କଣ ଦେହ ଯଦି ହେଲା ଟିକେ ମାରୁ ?
ଠାକୁର ଠାକୁର-ପଣ୍ଡା ଏକ ବୋଲି ଧରି
ଠାକୁରେ ଭେଟିବେ ତୋତେ ଏକଥା ବିସ୍ମରି ।'

ସେ ଦିନ ନଶାରେ ସଞ୍ଜ ସରଳା ସେ ନାରୀ
ପଡ଼ି ଆଜ ଦେବତାରେ ଉଭୟ ବିସ୍ମରି
ହୃଦଗତେ ପୂଜ ଆଶେ, ଘୋର ଅନ୍ଧକାରେ
ଶୁଖି ତା ଶରୀର ଦେଲା ପଣ୍ଡା-ବ୍ୟଭିଚାରେ ।
ଡାକିଲା ବ୍ୟାକୁଳ ହୋଇ 'ପ୍ରଭୁ ନାରାୟଣ,
ପାପ ଏ କି ପୁଣ୍ୟ ତାହା ତୁମ୍ଭେ ଖାଲି ଜାଣ ।'

ଫେରିଲେ ସକଳ ଯାତ୍ରୀ, ମଣି ତାଙ୍କ ସାଥେ,
ଘୋର ଲାଜେ ପଡ଼ି ଆଗେ ନାହିଁ ପାରେ ମାଥେ

ତେଣିକି ସେ ମଠାଙ୍କ ହୋଇ । ସାଥୀଙ୍କ କୃପାରେ
ଅଜ୍ଞାତ ରହିଲା ନାହିଁ ଗ୍ରାମ-ଜନଠାରେ
ପୁଷ୍ପରେ ତାହାର କିମ୍ବା ଲଜ୍ଜା ହୋଇଥର
ଶୋଇଲାରେ ଶର ପରି ବାନ୍ଧିଲା ପ୍ରବଳ ।

ଏ କଥା ସ୍ୱାମୀରେ କହିବେକ ତୁଣ୍ଡ ଖୋଲି
ଏ ସାହସ ନାହିଁ ଆସେ । କିନ୍ତୁ ସେ ନ ବୋଲି
ଥାଏ ଚୁପେ । ହନେ ରଘୁନାଥ କିନ୍ତୁ ଜାଣି
ସବୁ କଥା, ନ ପଚ୍ଛିର ଗଲା ଅଙ୍ଗ ହାଣି
ପାଞ୍ଚଣରେ—ସତୀ ସ୍ୱାଧ୍ୱୀ କହିପରିଧାଇ,
ଉଚ୍ଚେ ଡାକ—'ପିଲା ପୁଣି ହେବ ବେଶ୍ୟାଚାର ?'
ସକଳେ ଜାଣିଲେ କଥା ପ୍ରକାଶେ ଏଥର
ଚରଚ୍ଚୁ ଲାଗିଲା ଗ୍ରାମେ ମଣି-ସତୀଭିର ।

କହିଲେ ସତୀଏ, 'ପିଲା ନ ହେଲେ ନ ହେଲା
ଏ କଥା କରିବ, ମଲା, ପାଦେ ଦେଇ ଦେଇ ଠେଲା
ହାତ ଧରି ଖଣ୍ଡ ହେଲା ଯାକୁ ବେଦୀ ପରେ ।
ମରଣ ନ ହେଲା କପାଁ । ପୁଣ୍ୟ ସହରରେ
ଏମ୍ଭା କରିବାକୁ ଯାଇଥିଲା ଏ ଚଣ୍ଡାଳୀ ।'
ହନେ ଯାଏ ମଣି ସବୁ ସହିଲା ଏ ଗାଳି
ମଥା ପୋତି, ଆଉ ସତୀ ନ ପାରିଲା ସହି,
ଯେ ହନ ଲଶୀଥେ, ସବୁ ଦୁଃଖ ମାଥେ ବହି
ଗଳାରେ ସ୍ୱାମୀର ବସ୍ତ୍ର ଚୁମ୍ବି ଦେଲା ବାନ୍ଧି,
କହିଲା ହି କର ଯୋଡ଼ି ନୀରବରେ କାନ୍ଦି—
'ହେ ବଡ଼ଠାକୁରେ ପ୍ରଭୁ, ତୁମ ଦରଶନେ
ଭ୍ରଷ୍ଟ କଲି ଦେହ ମୋର, ନଷ୍ଟ ମୋ ଧରମେ ।

ମୁ ତୁଚ୍ଛ ନାରୀ ମୁଁ ଆଶ୍ରା ନେଇଥିଲି ପଦେ
ବାରଣ ଦେଇ କି ପାରନ୍ତନି ମୋ ବିପଦ ?
ଅସତୀ ତ ବଞ୍ଚିଛନ୍ତି ପୁଅ କନ୍ୟା ନେଇ
ସତୀ ବୋଲି ପରା ସାରା ଜୀବନ ନଦେଇ;
କନ୍ଦାଇ କନ୍ଦାଇ ମୋର ଏ ସାରା ଜୀବନ
ଦେଲ ଶେଷେ ଦେଲ ପାପ, ସରମ, ମରଣ !
ତୁମ ଦୟା କେବେ ମୁଁ ତ ଜାଣିନି ଜୀବରେ
ଯାଉଛି ମୁଁ ଭଲେ ରଖିବ କି ମୋ ସ୍ୱାମୀରେ !

[ ଲେଖକ ନିମାପଡ଼ାରେ ଶିକ୍ଷକ ଥିଲାବେଳେ ତତ୍କାଳୀନ 'ତରୁଣ କବି' ଶ୍ରୀମାନ୍ ସଚ୍ଚିଦାନନ୍ଦ ରାଉତରାୟଙ୍କର ଲେଖକ ନିକଟକୁ ଏକ ପତ୍ରରେ ଏହି କବିତାଟିର ମୋଟ କଥା ବ୍ୟଞ୍ଜିତ ହୋଇଥିଲା । ]



ମୁଦ୍ରାକର—ଶ୍ରୀ ନିତ୍ୟାନନ୍ଦ ଦାସ, ନିଉ ଷ୍ଟୋର୍ସ ପ୍ରେସ୍, ବ୍ରହ୍ମପୁର ।